# ଓଡ଼ିଆ ବର୍ଣ୍ଣବୋଧ



ଓଡ଼ିଆ ଭାଷା ପ୍ରତିଷ୍ଠାନ

ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଓଡ଼ିଶା ସରକାର

ଓଡ଼ିଆ

# ବର୍ଣବୋଧ

ଓଡ଼ିଆ ଭାଷା ପ୍ରତିଷ୍ଠାନ

ଓଡ଼ିଆ ଭାଷା ପ୍ରତିଷ୍ଠାନ
ୟୁନିଟ୍-୪, ଭୁବନେଶ୍ୱର-୧, ଓଡ଼ିଶା

# ଓଡ଼ିଆ

# ବର୍ଣ୍ଣବୋଧ

ମୂଳ ରଚନା : ଭକ୍ତକବି ମଧୁସୂଦନ ରାଓ

ପ୍ରକାଶକ : ଓଡ଼ିଆ ଭାଷା ପ୍ରତିଷ୍ଠାନ
(ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ)
ୟୁନିଟ୍-୫, ଭୁବନେଶ୍ୱର-୭୫୧୦୦୧
E-mail : odiabhasapratisthan@yahoo.co.in

ଅଳଙ୍କରଣ : ଶ୍ରୀ ହୀରାଲାଲ୍ ବରିହା

ପ୍ରକାଶକାଳ : ୨୦୧୪ ମସିହା



ମୁଦ୍ରଣ : ପ୍ରିଣ୍ଟ୍‌ଟେକ୍ ଅଫ୍‌ସେଟ୍ ପ୍ରା.ଲି., ଭୁବନେଶ୍ୱର

# ଦୁଇ ପଦ

ଓଡ଼ିଆ କହି ଶିଖି ସାରିଥିବା ଓ ଶୁଣିଲେ ବୁଝି ପାରୁଥିବା ଶିଶୁମାନଙ୍କୁ ଓଡ଼ିଆ ଭାଷାର ବର୍ଣ୍ଣମାଳା ବା ଅକ୍ଷର ସହିତ ପରିଚିତ କରାଇବା ପାଇଁ ୧୮୯୫ ମସିହାରେ ଭକ୍ତକବି ମଧୁସୂଦନ ରାଓ 'ବର୍ଣ୍ଣବୋଧ' ପୁସ୍ତକ ରଚନା କରିଥିଲେ। ଓଡ଼ିଆ ଲିପି ବା ବର୍ଣ୍ଣମାଳା ସହିତ ପ୍ରଥମ ପରିଚୟ ପ୍ରଦାନକାରୀ ପୁସ୍ତକ ଭାବରେ ଏହାର ଉପାଦେୟତା ଅସାଧାରଣ। ସରକାରୀ ଓ ବ୍ୟକ୍ତିଗତ ଉଦ୍ୟମରେ ଏ ଧରଣର ଶତାଧିକ ପୁସ୍ତକ ପ୍ରକାଶିତ ହୋଇଥିଲେ ସୁଦ୍ଧା 'ବର୍ଣ୍ଣବୋଧ'ର ଗୁରୁତ୍ୱ ଆଦୌ କମିନାହିଁ। ଦୀର୍ଘ ଶହେ ବର୍ଷରୁ ଅଧିକ କାଳ ଧରି ଓଡ଼ିଆ ଶିଶୁମାନେ ଏହି ପୁସ୍ତକ ପଢ଼ି ନିଜର ପ୍ରାଥମିକ ବର୍ଣ୍ଣ ପରିଚୟକୁ ସୁଦୃଢ଼ କରିଆସୁଛନ୍ତି।

ଭାଷାରେ ପରିବର୍ତ୍ତନ ଓ ବିବର୍ତ୍ତନ ସବୁବେଳେ ଘଟି ଚାଲିଥାଏ। ଭାଷା ଯୁଗୋପଯୋଗୀ ହୋଇ ନ ପାରିଲେ ସମସ୍ତଙ୍କ ଦ୍ୱାରା ଗ୍ରହଣୀୟ ହୁଏନାହିଁ। ଅପରିବର୍ତ୍ତନୀୟ ନିୟମାବଳି ଦ୍ୱାରା ଭାଷାକୁ ବାନ୍ଧି ରଖିଲେ, ତାହା ଅଚଳ ହୋଇ ଅଟକିରହେ। ଚଳିତ ସମୟର ଆବଶ୍ୟକତା ତଥା ଆଗାମୀ ସମୟର ସମ୍ଭାବନାକୁ ଗୁରୁତ୍ୱ ଦେଇ ଏହି ପୁସ୍ତକଟି ସଂକଳିତ ହୋଇଛି। ସର୍ବଜନୀନ ଶିକ୍ଷା ପ୍ରଦାନ ଆମର ରାଷ୍ଟ୍ରୀୟ ନୀତି ହୋଇଥିବା ଯୋଗୁଁ ଲିଖିତ ଭାଷାକୁ ପ୍ରତ୍ୟେକ ଶିଶୁ ପାଖରେ ପହଞ୍ଚାଇବା ଆମର କର୍ତ୍ତବ୍ୟ। ଭକ୍ତକବି ମଧୁସୂଦନ ରାଓଙ୍କ ଏହି ମହାନ୍ ଅବଦାନ 'ବର୍ଣ୍ଣବୋଧ' ଲାଗି ଆମେ ଭକ୍ତିପୂର୍ଣ୍ଣ କୃତଜ୍ଞତାର ସହ ତାଙ୍କୁ ଏହି ଅବସରରେ ସ୍ମରଣ କରୁଛୁ। ଏହି ମହାର୍ଘ ପୁସ୍ତକଟିର ଏକ ସମୟୋପଯୋଗୀ ସଂପାଦିତ ସଂସ୍କରଣ ପ୍ରକାଶନ ଲାଗି ଓଡ଼ିଶା ସରକାରଙ୍କ ନିଷ୍ଠା ଓ ତତ୍ପରତା ନିଶ୍ଚୟ ପ୍ରଶଂସନୀୟ। ଏ କ୍ଷେତ୍ରରେ ଅନ୍ୟ ଯେଉଁ ଲେଖକ ଓ ପ୍ରକାଶକଗଣ ସକ୍ରିୟତା ପ୍ରଦର୍ଶନ କରିଆସିଛନ୍ତି, ସେମାନେ ସମସ୍ତେ ମଧ୍ୟ ଧନ୍ୟବାଦର ପାତ୍ର।

ଡ. ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ଶ୍ରୀ ନିର୍ମଳକାନ୍ତ ମହାନ୍ତିଙ୍କ ଭଳି ଦୁଇଜଣ ବିଶିଷ୍ଟ ଭାଷା ବିଶେଷଜ୍ଞ ଓ ବ୍ୟାକରଣବିତ୍ ଏହି 'ଓଡ଼ିଆ ବର୍ଣ୍ଣବୋଧ'ର ସଂକଳନ ତଥା ସଂପାଦନା ଦାୟିତ୍ୱ ସୁଚାରୁରୂପେ ସଂପନ୍ନ କରିଥିବାରୁ ସେମାନଙ୍କୁ ଆମେ ଆନ୍ତରିକ କୃତଜ୍ଞତା ଜଣାଉଛୁ। ପୁସ୍ତକଟିର ପାଠ୍ୟ ଓ ପରିପାଟିରେ ସର୍ବୋତ୍ତମତା ଲାଗି ସଂକଳକଦ୍ୱୟଙ୍କର ଆନ୍ତରିକ ନିଷ୍ଠା ଓ ଅଧ୍ୟବସାୟ ପ୍ରଶଂସନୀୟ।

ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର କର୍ମକର୍ତ୍ତା ଏବଂ ଓଡ଼ିଆ ଭାଷା ପ୍ରତିଷ୍ଠାନର କର୍ମଚାରୀଙ୍କର ସହଯୋଗ ନିମନ୍ତେ ମଧ୍ୟ ଆମେ ସେମାନଙ୍କଠାରେ କୃତଜ୍ଞ।

ଓଡ଼ିଆ ଭାଷା ପ୍ରତିଷ୍ଠାନ

# ଓଡ଼ିଆ ଭାଷା ପ୍ରତିଷ୍ଠାନ ପ୍ରକାଶିତ ପୁସ୍ତକ



**ସାଧାରଣ ଓଡ଼ିଆ ବନାନ ଶୁଦ୍ଧି**

ପ୍ରକାଶ କାଳ : ୨୦୦୯

ମୂଲ୍ୟ : ଟ. ୫୦.୦୦




**ଓଡ଼ିଆ ସାଂସ୍କୃତିକ ଶବ୍ଦାବଳୀ**

(ପଞ୍ଚସଖା ଖଣ୍ଡ)

ପ୍ରକାଶ କାଳ : ୨୦୧୦

ମୂଲ୍ୟ : ଟ. ୨୦୦.୦୦




**ପ୍ରଶାସନ ଶବ୍ଦକୋଷ**

ପ୍ରକାଶ କାଳ : ୨୦୧୦

ମୂଲ୍ୟ : ଟ. ୧୫୦.୦୦




**An easy approach to Learn Odia Language**

*(A self learning guide)*

ପ୍ରକାଶ କାଳ : ୨୦୧୦

ମୂଲ୍ୟ : ଟ. ୭୦.୦୦




**ଡୁଡ ମାଂମାଂ**

(ବଣ୍ଡା-ଓଡ଼ିଆ ଚିତ୍ରଶବ୍ଦ ପୁସ୍ତକ)

ପ୍ରକାଶ କାଳ : ୨୦୧୦

ମୂଲ୍ୟ : ଟ. ୧୦୦.୦୦




**ଓଡ଼ିଆ ଚିତ୍ର-ଶବ୍ଦ ବହି**

ପ୍ରକାଶ କାଳ : ୨୦୧୦

ମୂଲ୍ୟ : ଟ. ୯୬.୦୦




**କାର୍ଯ୍ୟାଳୟ ନଥି**

(ଆଦର୍ଶ ଟିପ୍ପଣୀ ଓ ଚିଠା ନମୁନା ପୁସ୍ତକ)

ପ୍ରକାଶ କାଳ : ୨୦୧୨

ମୂଲ୍ୟ : ଟ. ୧୪୦.୦୦




**ଓଡ଼ିଶା ପ୍ରଦେଶ ଗଠନର ଇତିହାସ**

ମୂଲ୍ୟ : ଟ. ୫୦.୦୦

## ସ୍ୱରବର୍ଣ୍ଣ

ଅ ଆ ଇ ଈ ଉ ଊ ଋ ଏ ଐ ଓ ଔ

## ବ୍ୟଞ୍ଜନବର୍ଣ୍ଣ

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| ଚ | ଛ | ଜ | ଝ | ଞ |
| ଟ | ଠ | ଡ | ଢ | ଣ |
| | | ଡ଼ | ଢ଼ | |
| ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ |

ଯ ୟ ର ଳ ଲ ୱ

ଶ ଷ ସ ହ

( କ୍ଷ ଜ୍ଞ )

| ସ୍ୱର ଚିହ୍ନ | |
|---|---|
| ଆ | ା |
| ଇ | ି |
| ଈ | ୀ |
| ଉ | ୁ |
| ଊ | ୂ |
| ଋ | ୃ |
| ଏ | େ |
| ଐ | ୈ |
| ଓ | ୋ |
| ଔ | ୌ |

| ଉଚ୍ଚାରଣ ସୂଚକ ଚିହ୍ନ | |
|---|---|
| ଅନୁସ୍ୱାର | ଂ |
| ବିସର୍ଗ | ଃ |
| ଚନ୍ଦ୍ରବିନ୍ଦୁ | ଁ |
| ହଲନ୍ତ | ୍ |



| ବ୍ୟଞ୍ଜନ ଚିହ୍ନ | |
|---|---|
| ଯ | ୍ୟ |
| ର | ୍ର |
| ର୍ | ର୍ |
| ଳ | ୍ଳ |
| ଲ | ୍ଲ |
| ବ | ୍ୱ |
| ଣ | ୍ଣ |
| ନ | ୍ନ |
| ମ | ୍ମ |

| | | | | |
|---|---|---|---|---|
| ଅଖ | ଆଇ | ଈଶ | ଊନ | ଏକ |
| ରଖ | ଉଇ | ଆସ | ଋଣ | ଓଟ |

| | | | | | |
|---|---|---|---|---|---|
| କର | ଟକ | ଠକ | ଦଣ | ରସ | କକ୍ଷ |
| ଘର | ଛକ | ନଖ | ଯଣ | ଚଷ | ଲକ୍ଷ |
| ଖଟ | ଜଳ | ଡର | ଧନ | ସର | ଯକ୍ଷ |
| ଘଟ | ଫଳ | ଥର | ମନ | ଧର | ଅକ୍ଷ |
| ଗଛ | ବଢ଼ | ଢମ | ଭୟ | ତଟ | ଦକ୍ଷ |
| ପଛ | ଝଡ଼ | ଯମ | ଲୟ | ହଟ | ବକ୍ଷ |

| | | | |
|---|---|---|---|
| ଅଳସ | ଦଶମ | ସହଜ | ଶୟନ |
| କଳସ | ଶକଟ | ସରଳ | ସମୟ |
| ଆସନ | ରଜକ | ସଳଖ | ସରସ |
| ବସନ | ରଜତ | ସକଳ | ଔରସ |
| ଓଜନ | ଚରଣ | ବୟସ | ଔଷଧ |
| ଭଜନ | ଶରଣ | ପଣସ | ଆଳୟ |
| ଅକ୍ଷର | ଅକ୍ଷୟ | ରକ୍ଷକ | ଭକ୍ଷକ |



ଭଜମନ । ଧନଜନ । ରଥ ଗଡ଼ । ଓଟ ଚଢ଼ । ଘର ପଛ ।
ବରଗଛ । ହଳ ଧର । ହଳ କର ।
କଟକ ନଗର । ଧବଳ ଟଗର । ଜଳ ବରଷଇ । ରଇତ ଚଷଇ ।



# ଆ-କାର ଯୋଗ

| | | | |
|---|---|---|---|
| କ୍ + ଆ = କା | | ା | ଖ୍ + ଆ = ଖା |
| ଏକ୍‌ଆ = ଏକା | | | ଅଖ୍‌ଆ = ଅଖା |
| କ୍‌ଆ = | କା | | ଖ୍‌ଆ = ଖା |

ଗା, ଘା, ଚା, ଛା, ଜା, ଝା, ଟା, ଠା, ଡା, ଢା, ଡ଼ା, ଢ଼ା, ଣା, ତା, ଥା, ଦା, ଧା, ନା,
ପା, ଫା, ବା, ଭା, ମା, ଯା, ୟା, ରା, ଲା, ଳା,ୱା, ଶା, ଷା, ସା, ହା, କ୍ଷା, ଜ୍ଞା ।

| | | | |
|---|---|---|---|
| ଧନ : ଧାନ | ସତ : ସାତ | ବଳ : ବାଳ | ଫଳ : ଫାଳ |
| ଖାର : ଖରା | ଲାତ : ଲତା | କାନ : କନା | ବାର : ବରା |

| | | | | |
|---|---|---|---|---|
| ଭାଇ | ଚାଷ | ଦୟା | ଦାତା | ରାଜା |
| ଗାଈ | ବାସ | ମାୟା | ମାତା | ଲାଜ |
| ବାଟ | ବାର | ସଭା | ନାଶ | ଭାଷା |
| ଘାଟ | ମାସ | ଶାଖା | କାଶ | ଆଶା |
| ହାୱା | ତାୱା | ରକ୍ଷା | ଆଜ୍ଞା | ଜ୍ଞାନ |
| ରସନା | ସାଧନା | ପାଷାଣ | ସମାନ | ଶାସନ |
| ବାସନା | ଯାତନା | ସାହସ | ସକାଳ | କାରଣ |
| ଉପବାସ | ଅବକାଶ | ଐରାବତ | ରାମନାଥ | ନାରାୟଣ |




ଯାଦବ ବସଇ । ମାଧବ ହସଇ ।
ଆକାଶର ତାରା । ବରଷାର ଧାରା ।
ପାହାଡ଼ର ତଳ । ଭଲ ଝର ଜଳ ।
ଉମା ଭାଇ ରାମ । ଉଷା ଭାଇ ଶାମ ।
ଚାଷ କର । ଧାନ କାଟ । ଚାଲ ଭାଇ, ଭଲ ବାଟ ।



# ହ୍ରସ୍ୱ ଇ-କାର ଯୋଗ

| | | | |
|---|---|---|---|
| କ୍ + ଇ = କି |  | ଖ୍ + ଇ = ଖି |
| ଚକ୍ଇ = ଚକି | | ଆଖ୍ଇ = ଆଖି |
| କ୍ଇ = କି | | ଖ୍ଇ = ଖି |

ଗି, ଘି, ଚି, ଛି, ଜି, ଝି, ଟି, ଠି, ଡି, ଢି, ଡ଼ି, ଢ଼ି, ଣି, ତି, ଥି, ଦି, ଧି, ନି,
ପି, ଫି, ବି, ଭି, ମି, ଯି, ୟି, ରି, ଳି, ଲି, ୱି, ଶି, ଷି, ସି, ହି, କ୍ଷି, ଜ୍ଞି।

| | | | |
|---|---|---|---|
| ମାଛ : ମାଛି | ଛାତ : ଛାତି | ଚକ : ଚକି | ବାଡ଼ : ବାଡ଼ି |
| ଘାଟ : ଘାଟି | ଖାଲ : ଖାଲି | ତାଳ : ତାଳି | ଗଳ : ଗଳି |

| | | | | |
|---|---|---|---|---|
| ବିଧି | ରବି | ଗତି | ଜାତି | ମଣି |
| ନିଧି | ଛବି | ମତି | ରାତି | ଖଣି |
| ହିମ | ଶିବ | ଗିରି | ତିଥି | ହରି |
| ପାଣି | ବିଷ | ଶନି | ପତି | ତରି |
| ଦିବା | ନିଶା | ଋଷି | ତିଳ | ଲିପି |
| ନିଶି | ଯାନ୍ତ୍ରିକ | ଦକ୍ଷିଣ | ଶିକ୍ଷିତ | ମକ୍ଷିକା |
| ଶିଶିର | ଦିବସ | ହରିଣ | ମଳିନ | ବିଷମ |
| ଅଶନି | କିରଣ | ବାଳିକା | ମହିଷ | କଠିନ |
| ବିଚାର | ଅତିଥି | ନିକଟ | ମହିମା | ବଧିର |
| ଅତିଶୟ | ପରିଚୟ | ଅଭିଳାଷ | ପରିହାସ | ଇତିହାସ |

ହରିଣ ନ ଦିଏ ଧରା । ଦଉଡ଼ନା ବଡ଼ ଖରା ।
ଛବି ବହି କିଣି ଆଣ । ଭଲ ପାଣି କର ପାନ ।

ଅରଣା ମଇଁଷି ରହିଛି ଅନାଇ
ମଇଁଷିର ପାଖ ନ ଯାଅ ଦନାଇ ।

ରାତି ପାହିଲାଣି ଡାକଇ କାଉ
ଉଠ ଉଠ, ମଠ ନ କର ଆଉ ।



# ଦୀର୍ଘ ଈ-କାର ଯୋଗ

ୀ

| | |
|---|---|
| ଦ୍ + ଈ = ଦୀ | ନ୍ + ଈ = ନୀ |
| ନଦ୍‌ଈ = ନଦୀ | ଧନ୍‌ଈ = ଧନୀ |
| ଦ୍‌ଈ = ଦୀ | ନ୍‌ଈ = ନୀ |

ଗୀ, ଚୀ, ଜୀ, ଟୀ, ଠୀ, ଡୀ, ଢୀ, ଡ଼ୀ, ଢ଼ୀ, ଣୀ, ତୀ, ଥୀ, ଦୀ, ଧୀ, ନୀ, ପୀ,
ବୀ, ଭୀ, ମୀ, ଯୀ, ରୀ, ଳୀ, ଲୀ, ଶୀ, ଷୀ, ସୀ, ହୀ, କ୍ଷୀ, ଜ୍ଞୀ ।

| | | | |
|---|---|---|---|
| ଧନ : ଧନୀ | ବର : ବୀର | ହାତ : ହାତୀ | ଶତ : ଶୀତ |
| ଚାଷ : ଚାଷୀ | ଗତ : ଗୀତ | ପଡ଼ା : ପୀଡ଼ା | ବଣା : ବୀଣା |

| | | | | | |
|---|---|---|---|---|---|
| ଗୀତ | ବୀର | ଦୀନ | ରାଣୀ | ଧନୀ | ଶୀତ |
| ତୀର | ହୀନ | ବାଣୀ | ମାନୀ | ଧୀର | ପୀତ |
| ଲୀନ | ରୀତି | ସୀତା | ନୀର | ଭୀତ | ମୀନ |
| ନୀତି | ସତୀ | ଦୀପ | ନାରୀ | ପୀଡ଼ା | ବୀଣା |
| ନଦୀ | ବୀଜ | ଲୀଳା | ଫଣୀ | ଶଶୀ | କୀଟ |
| ଦାୟୀ | ରାକ୍ଷୀ | ରାଜ୍ଞୀ | ପକ୍ଷୀ | ରକ୍ଷୀ | କ୍ଷୀଣ |

| | | | | |
|---|---|---|---|---|
| ଶରୀର | ଧୀବର | ଶୀତଳ | ଜନନୀ | ରଜନୀ |
| ସମୀର | ନବୀନ | ଗଭୀର | ଭଗିନୀ | ଧରଣୀ |
| ଯାମିନୀ | ଅଧୀନ | ଜୀବନ | ରମଣୀ | ତରଣୀ |
| ଉପବୀତ | ଉପନୀତ | ମାନନୀୟ | ରମଣୀୟ | ବିପରୀତ |

ସମୀର ବହଇ ଧୀର । ଶୀତଳ ନଦୀର ନୀର । ବିହର ନଦୀର ତୀର ।

ପାଇକ ସାଜିଲା,
କାହାଳୀ ବାଜିଲା,
ହାତୀ ଆଇଲା ଚାଲି,
ଆସ ଆସ ଭାଇ,
ଗୀତ ଗାଇ ଗାଇ,
ଯିବା ନଦୀର ବାଲି ।



ଜିଭ : ଜୀବ
ପାଣି : ରାଣୀ
ତିଥି : ତୀର
ଝିଡି : ନଦୀ
ବଧିର : ଅଧୀର
ପିଢ଼ା : ପୀଡ଼ା

# ହ୍ରସ୍ୱ ଉ-କାର ଯୋଗ



| | |
|---|---|
| କ୍ + ଉ = କୁ | ଖ୍ + ଉ = ଖୁ |
| ଡାକ୍‌ଉ = ଡାକୁ | ଆଖ୍‌ଉ = ଆଖୁ |
| କ୍‌ଉ = କୁ | ଖ୍‌ଉ = ଖୁ |

ଗୁ, ଘୁ, ଚୁ, ଛୁ, ଜୁ, ଝୁ, ଟୁ, ଠୁ, ଡୁ, ଢୁ, ଡ଼ୁ, ଢ଼ୁ, ଣୁ, ତୁ, ଥୁ, ଦୁ, ଧୁ, ନୁ, ପୁ, ଫୁ, ବୁ, ଭୁ,
ମୁ, ଯୁ, ୟୁ, ରୁ, ଲୁ, ଳୁ, ଶୁ, ଷୁ, ସୁ, ହୁ, କ୍ଷୁ ।

| | | | |
|---|---|---|---|
| ଆଳ : ଆଳୁ | ଧନ : ଧନୁ | ଗଡ଼ : ଗୁଡ଼ | ଆୟ : ଆୟୁ |
| ଖରା : ଖୁରା | କଳ : କୁଳ | କଳା : କୁଳା | ସର : ସରୁ |

| | | | | |
|---|---|---|---|---|
| ମୁଖ | ରଘୁ | ଆୟୁ | ଚାରୁ | ପୁଣ |
| ସୁଖ | ଲଘୁ | ବାୟୁ | ଭୀରୁ | ଶୁଣ |
| ତରୁ | ଯଦୁ | ପଶୁ | ରଜ୍ଜୁ | କୁଣ |
| ସରୁ | ମଧୁ | ଶିଶୁ | ଋତୁ | ଦୁଷ୍ଟ |
| ପୁର | ସାଧୁ | ରୁଚି | ବହୁ | ଧନୁ |
| ସୁର | ବିଧୁ | ଶୁଚି | ବାହୁ | ତନୁ |
| ମୁନି | ସୁଧା | ଶୁଭ | କୁଳ | ସୁନା |
| ଚକ୍ଷୁ | କ୍ଷୁଧା | କ୍ଷୁର | ଭିକ୍ଷୁକ | ଆୟୁଷ |
| କୁକୁର | ବକୁଳ | ଯୁବକ | ସୁଶୀଳ | ମାଧୁରୀ |
| ଅସୁର | ମୁକୁଳ | ପୁରୁଷ | କୁଲୀନ | ଚାତୁରୀ |
| ଚତୁର | କୁସୁମ | କୁଶଳ | ମଧୁର | ମୁରଲୀ |
| ଶୁଭଦିନ | ହୁତାସନ | ସମୁଦାୟ | ନିରୁପାୟ | ପୁଲକିତ |



ବିଲୁଆ ବଡ଼ ଚତୁର । ପଇଡ଼ ବଡ଼ ମଧୁର ।
ବଉଳ ଫୁଲର ବାସ । ଚହଟଇ ଚଉପାଶ ।
ଦୀପ ଲଗାଇ ଦିଅ । ଦୁଇ ପଳ ଗାଈ ଘିଅ ।



# ଦୀର୍ଘ ଊ-କାର ଯୋଗ

ଧ୍ + ଊ = ଧୂ

ବଧ୍ଊ = ବଧୂ

ଧ୍ଊ = ଧୂ



ଦ୍ + ଊ = ଦୂ

ଅଦ୍ଊର = ଅଦୂର

ଦ୍ଊ = ଦୂ

ଘୂ, ଚୂ, ଜୂ, ଟୂ, ଡୂ, ତୂ, ଦୂ, ଧୂ, ନୂ, ପୂ, ଫୂ, ବୂ, ଭୂ, ମୂ, ଯୂ, ଝୂ, ରୂ, ଶୂ, ସୂ, ହୂ ।

| | | | |
|---|---|---|---|
| ଦର : ଦୂର | ମଳ : ମୂଳ | ମତ : ମୂତ | ମଢ଼ : ମୂଢ଼ |
| କଳ : କୂଳ | ତଳି : ତୂଳି | ପରା : ପୂରା | ବଧ : ବଧୂ |

| | | | | |
|---|---|---|---|---|
| କୂପ | ଦୂତ | ଧୂମ | ପୂଜା | ମୂଳ |
| ଧୂପ | ଭୂତ | ଭୂମି | ଚୂଡ଼ା | ଶୂଳ |
| ରୂପ | ଗୂଢ଼ | ମୂକ | ଯୂଥ | ଶୂର |
| ଭୂପ | ମୂଢ଼ | ଧୂଳି | ଯୂପ | ଦୂର |



| | | | | |
|---|---|---|---|---|
| ଶୂକର | ଆହୂତ | ନୂପୁର | ମୂଷିକ | ନୂତନ |
| ଭୂତଳ | ଦୂକୂଳ | ଭୂଷଣ | ସମୂହ | ମୟୂର |
| କାଳକୂଟ | ନିରୂପଣ | ଅପରୂପ | ଧୂଳିଖେଳ | ଅନୂକୂଳ |

ଆଇଲାଣି ବିଲାଇ । ମୂଷା ଯିବ ପଳାଇ ।



ମୟୂର ନାଚଇ । ସପୁରି ପାଚଇ । କୂପ ଜଳ ସୁଶୀତଳ ।
ଦୂର ବାଟ । ନୂଆ ହାଟ । ନଦୀ କୂଳ । ତରୁ ମୂଳ ।
ନୂତନ ବାଳକ ବାଳିକା । କୁମୁଦ କୁସୁମ ମାଳିକା ।

| | | |
|---|---|---|
| ଗୁଢ଼ | : | ଗୂଢ଼ |
| ମଧୁ | : | ବଧୂ |
| ଭୁବନ | : | ଭୂମି |
| ମୁଢ଼ି | : | ମୂଢ଼ |
| ଆୟୁଷ | : | ପାୟୂଷ |
| ରୁପା | : | ରୂପ |
| ଧୁଆଁ | : | ଧୂଆଁ |
| ଦୁଧ | : | ଦୂବ |

# ର-କାର ଯୋଗ

ତ୍ + ର = ତୃ
ମାତ୍ର = ମାତୃ
ତ୍ର = ତୃ



ମ + ର = ମୃ
ଅମ୍ରତ = ଅମୃତ
ମ୍ର = ମୃ

ଗୃ, ଘୃ, ଛୃ, ତୃ, ଦୃ, ଧୃ, ନୃ, ପୃ, ବୃ, ଭୃ, ମୃ, ଶୃ, ସୃ, ହୃ ।

| | | | |
|---|---|---|---|
| ମତ : ମୃତ | କପା : କୃପା | ବଥା : ବୃଥା | କଷି : କୃଷି |
| ଘଣା : ଘୃଣା | ବକ୍ଷ : ବୃକ୍ଷ | କମି : କୃମି | ହତ : ହୃତ |

| | | | | |
|---|---|---|---|---|
| କୃଶ | ମୃଗ | ଗୃହ | ତୃଷା | କୃଷି |
| ବୃକ୍ଷ | ତୃଣ | ଘୃତ | ବୃଥା | କୃମି |
| ନୃପତି | ପୃଥିବୀ | ମୃଣାଳ | କୃଷକ | ଶୃଗାଳ |
| ତୃତୀୟ | ମାତୃଭୂମି | ମାତୃଭାଷା | ଅମୃତ | ସଦୃଶ |



ଧଳା ବୃଷ ବୁଲୁଅଛି । କଳା ଗାଈ ଜଳ ପିଉଅଛି ।
କୃଷକ ଘରଣୀ ଗୃହ ଲିପୁଅଛି । ଗାଈକୁ ତୃଣ ଦିଅ ।



କୃଷିକାରୀ ହିତ କରେ ପୃଥିବୀର । କୃଷି କରି ପାଳେ ମାନବ ଶରୀର ।
ମୃଗ ତୃଣ ଖାଇ ବୁଲଇ ବନ । ବାଘ ବିନାଶଇ ତାର ଜୀବନ ।

# ଏ-କାର ଯୋଗ

| | | |
|---|---|---|
| କ୍ + ଏ = କେ | େ◌ | ତ୍ + ଏ = ତେ |
| ଟିକ୍ଏ = ଟିକେ | | ଏତ୍ଏ = ଏତେ |
| କ୍ଏ = କେ | | ତ୍ଏ = ତେ |

ଖେ, ଗେ, ଘେ, ଚେ, ଛେ, ଜେ, ଝେ, ଟେ, ଠେ, ଡେ, ଢେ, ଡ଼େ, ଢ଼େ, ଣେ, ତେ, ଥେ, ଦେ, ଧେ,
ନେ, ପେ, ଫେ, ବେ, ଭେ, ମେ, ଯେ, ୟେ, ରେ, ଳେ, ଲେ, ୱେ, ଶେ, ଷେ, ସେ, ହେ, କ୍ଷେ, ଞେ।

| | | | |
|---|---|---|---|
| ଦଶ : ଦେଶ | ପଟ : ପେଟ | ବଳ : ବେଳ | ପଟା : ପେଟା |
| ଚର : ଚେର | ବଗ : ବେଗ | ରଖା : ରେଖା | ଖଳ : ଖେଳ |

| | | | | |
|---|---|---|---|---|
| କେଶ | ମେଷ | ଲେଶ | ରେଣୁ | ସେବା |
| ବେଶ | ଶେଷ | ଦେଶ | ବେଣୁ | ସେନା |
| ମେଘ | ରେଖା | ବେଣୀ | ସେତୁ | ଧେନୁ |
| ତେଜ | ଲେଖା | ଶେଣି | ହେତୁ | ମେରୁ |
| ଆଦେଶ | ବିଦେଶ | କେଶବ | କେଶର | ଗଣେଶ |
| ଅଶେଷ | ବିଶେଷ | ସେବକ | ନିଷେଧ | ସୁରେଶ |
| ଉଭୟେ | ନିବେଶ | ଚେତକ | ଅଜ୍ଞେୟ | ପକ୍ଷେ |





ଛେଳି ଛୁଆଟିକୁ ଦେଖ। ମେଷ ଛୁଆଟିକୁ ରଖ। ଗାଡ଼ିରେ ଲଗାଅ ଅଖ। ପାକଲା ବେଲକୁ ଚାଖ।
ନଡ଼ିଆ ତେଲ ଲଗାଅ। କେଶବର ଲୁଗା ମଗାଅ। ଲେଖା ପଢ଼ାରେ ଦିଅ ମନ।
ହେଳା ନ କର ଶିଶୁଗଣ। ଖେଳା କର ହେ ପଢ଼ା ସାରି। ଦେଖିବ ଆସ ଶୁଆ ଶାରୀ।

# ଐ-କାର ଯୋଗ

| | | |
|---|---|---|
| ନ୍ + ଐ = ନୈ | ୈ | ବ୍ + ଐ = ବୈ |
| ଜନ୍ଐକ = ଜନୈକ | | ଅବ୍ଐଧ = ଅବୈଧ |
| ନ୍ଐ = ନୈ | | ବ୍ଐ = ବୈ |

ଗୈ, ଚୈ, ଜୈ, ତୈ, ଥୈ, ଦୈ, ଧୈ, ନୈ, ପୈ, ଫୈ, ବୈ,
ଭୈ, ମୈ, ରୈ, ଲୈ, ଶୈ, ସୈ, ହୈ।

ତଳ : ତୈଳ　ଶବ : ଶୈବ　ବର : ବୈର　ଜନ : ଜୈନ

| | | | |
|---|---|---|---|
| ତୈଳ | ଦୈବ | ହୈମ | ବୈଧ |
| ଶୈଳ | ଶୈବ | ନୈଶ | ବୈର |
| ଶୈଶବ | ସୈକତ | ବୈଶାଖ | ଶୈବାଳ |
| କୈଳାସ | ସୈନିକ | ଭୈରବ | ବୈଦେଶିକ |



ମଥାରେ ତୈଳ ଲଗାଅ। ଛେଳି ଶୈଳ ଉପରେ ଚରୁଅଛି।
କୈଳାସର ଶୈଶବ କାଳରେ ତାହାର ପିତା ମରିଗଲେ। ଭୈରବ ଛତା ଧରିଅଛି।



ବୈଶାଖ ମାସେ ବଡ଼ ଖରା। ଅତି ତପତ ହୁଏ ଧରା।

# ଓ-କାର ଯୋଗ

| | | |
|---|---|---|
| କ୍ + ଓ = କୋ | ୋ | ଶ୍ + ଓ = ଶୋ |
| ଆଲ୍ଓକ = ଆଲୋକ | | ଅଶ୍ଓକ = ଅଶୋକ |
| ଲ୍ଓ = ଲୋ | | ଶ୍ଓ = ଶୋ |

ଖୋ, ଗୋ, ଘୋ, ଚୋ, ଛୋ, ଜୋ, ଝୋ, ଟୋ, ଠୋ, ଡୋ, ଢୋ, ଡ଼ୋ, ଢ଼ୋ, ଣୋ, ତୋ, ଥୋ, ଦୋ, ଧୋ, ନୋ, ପୋ, ଫୋ, ବୋ, ଭୋ, ମୋ, ଯୋ, ୟୋ, ରୋ, ଳୋ, ଲୋ, ଶୋ, ଷୋ, ସୋ, ହୋ, କ୍ଷୋ, ଜ୍ଞୋ।

| | | | |
|---|---|---|---|
| କବି : କୋବି | ଗରା : ଗୋରା | ଦଳ : ଦୋଳ | ଡର : ଡୋର |
| ଗଡ଼ : ଗୋଡ଼ | ମଜା : ମୋଜା | ମତି : ମୋତି | ଚର : ଚୋର |

| | | | | |
|---|---|---|---|---|
| ଲୋକ | ରୋଗ | ଦୋଷ | ଯୋଗ | ସୋମ |
| ଶୋକ | ଭୋଗ | ରୋଷ | ଘୋର | ହୋମ |
| ଲୋଚନ | କପୋତ | ଗୋକୁଳ | ଯୋଜକ | ଭୋଜନ |
| ମୋଚନ | କପୋଳ | ଭୂଗୋଳ | ମୋଦକ | ରୋଦନ |
| ପ୍ରୟୋଗ | କୋଠରି | ବିକ୍ଷୋଭ | ସହୋଦର | ପୁରୋହିତ |
| ପରିଶୋଧ | ପରିତୋଷ | କଠୋର | ମନୋଜ୍ଞ | ଯଜ୍ଞୋପବୀତ |

ଭୋଜନ କର । ରୋଦନ ନ କର । ରୋଷ ଛାଡ଼ । ମନକୁ ତୋଷ କର । ଗୋଲାପ ଫୁଲ ନିଅ । ଢୋଲ ବଜାଇ ରାମ ମାଆ କୋଳରେ ବସି ଝୁଲୁଅଛି । ଗୋପାଳ ସୁବୋଧ ବାଳକ ଅଟେ । ସେ ମନୋଯୋଗ ଦେଇ ପାଠ ପଢ଼େ ।



ଗୋରୁ ଖାଉଅଛି କୋମଳ ଘାସ ।
ଗୋପୀ ଜେନା ଚାଷୀ କରୁଛି ଚାଷ ।
ମଧୁର ବିନୟ ବଚନ ।
କହି ତୋଷିବ ଜନ ମନ ।



# ଔ-କାର ଯୋଗ

ଦ୍ + ଔ = ଦୌ

ଆଦ୍ଔ = ଆଦୌ

ଦ୍ଔ = ଦୌ

ୌ

ଶ୍ + ଔ = ଶୌ

ଅଶ୍ଔଚ = ଅଶୌଚ

ଶ୍ଔ = ଶୌ

ଗୌ, ଚୌ, ଢୌ, ତୌ, ଦୌ, ଧୌ, ନୌ, ପୌ, ଫୌ, ବୌ, ଭୌ,
ମୌ, ଯୌ, ରୌ, ଳୌ, ଲୌ, ଶୌ, ସୌ, କ୍ଷୌ

ମଜା : ମୌଜା    ମନ : ମୌନ    ଚକ : ଚୌକ    ମକା : ମୌକା

| | | | | | |
|---|---|---|---|---|---|
| ପୌଷ | ସୌଧ | ଗୌର | ସୌରୀ | ଲୌହ | ଆଦୌ |
| କ୍ଷୌର | ଶୌଚ | ଧୌତ | ସୌର | ଗୌରୀ | ନୌକା |
| ଗୌରବ | କୌତୁକ | ଯୌବନ | କୌଶଳ | କୌରବ | ପୌର |
| ସୌରଭ | ଯୌତୁକ | ପୌରୁଷ | କୌପୀନ | ପୌରବ | ସୌଧ |

ତୌଲ କର । ନୌକା ଧର । ଲୌହ ଗୋଟିଏ ଧାତୁ ।
ସେଥିରୁ ଛୁରି, କଟୁରୀ, ଦାଆ, କୋଡ଼ି ଆଦି ହୋଇଅଛି ।





# ବିବିଧ ପାଠ

| | | | | |
|---|---|---|---|---|
| ଶିଖା | ଘୃଣା | ସୀମା | ରାଶି | କାଶୀ |
| ଶୋଭା | କୃପା | ହାନି | ଯୂଥ | ସୁଖୀ |
| କୋକିଳ | ଷୋଡ଼ଶ | ମୋହିନୀ | ଏକାକୀ | ପିପାସା |
| ଆକୃତି | ସୋପାନ | ଦୟାଳୁ | ମେଧାବୀ | ନିଷେଧ |

| | | | |
|---|---|---|---|
| ବରଗଛ | ମହୁମାଛି | ଧଳାବୃଷ | ଆଷାଢ଼ମାସ |
| ଧଳାଗାଈ | ଯୂଇଫୁଲ | କଳାମେଘ | କୈଳାସଗିରି |
| ହରିଣପଲ | ନଦୀକୂଳ | ମିଠାବେଲ | କାଉକୋଇଲି |
| ବୁଢ଼ାହାତୀ | ଗଛମୂଳ | ସୋରିଷତେଲ | ବଡ଼କୌତୁକ |

ସକାଳ ହେଲାଣି । ଉଠ, ମୁଖ ଧୁଅ । ଶୀତଳ ପବନ ବହୁଅଛି । ବାହାରେ ଟିକିଏ ବୁଲି ଆସ । ବଗିଚାରେ କେତେ ଫୁଲ ଫୁଟିଅଛି ।

ଆହା, ଫୁଲ କିପରି ବାସୁଅଛି । କାଉ ବୋବାଉଅଛି । ଘରଚଟିଆ ଏଠାରୁ ଉଡ଼ି ସେଠାରେ ବସୁଅଛି । କଜଳପାତି ଗଛ ଉପରେ ବସି ରାବୁଅଛି । କୋଇଲି କୁହୁକୁହୁ ଡାକୁଅଛି । ଆସ, ପୋଥି ଘେନି ପାଠଶାଳାକୁ ଯିବା । ସେଠାରେ ମନ ଦେଇ ପାଠ ପଢ଼ିବା । ଗୁରୁ ଯାହା କହିବେ, ତାହା ମନ ଦେଇ ଶୁଣିବା ।

ବେଳ ବୁଡ଼ିଲାଣି । ଗୁରୁ ମେଲାଣି ଦେଲେଣି । ଚାଲ ଘରକୁ ଯିବା । ଘରେ ପୋଥି ଥୋଇଦେଇ ମାଆ ଯାହା ଖାଇବାକୁ ଦେବେ ତାହା ଖାଇବା । ଖାଇସାରି ଲୁଚକାଳି ଖେଳିବା । ଖେଳି ସାରିଲେ ବାପା ଯାହା କହିବେ, ତାହା କରିବା । ଦିନବେଳେ ଯାହା ପଢ଼ିଥିବା, ରାତିରେ ତାହାକୁ ଆଉ ଥରେ ପଢ଼ିବା । ପଢ଼ିସାରି ଭାତ ଖାଇ ଶୋଇବା । ରେବତୀର ଘରେ ଢୋଲ ବାଜୁଅଛି । ଗୌରୀ ପୋଥି ପଢୁଅଛି ।



ଗାଈ ବାଛୁରୀ ଆସ ଆସ, ଖାଇବ ପରା ଦୁବ ଘାସ ।
ମୋ ପାଖରେ ହୁଅ ଛିଡ଼ା, ଖାଇବ ଯେବେ ଘାସ ବିଡ଼ା ।



ଆରେ ମୋର ପୁସି, ଖା ରେ ଯେତେ ଖୁସି । ଦୁଧ ଭାତ ମିଠା, ଖାଇବୁ ଘି ପିଠା ।
ମୋ ପାଖରେ ବସି, ଖା ରେ ମୋର ପୁସି ।

# ଂ ଅନୁସ୍ୱାର ଯୋଗ

ଅ + ଂ = ଅଂ   କ + ଂ = କଂ

ମା + ଂ = ମାଂ   ସି + ଂ = ସିଂ

ଅଂ, ଇଂ, କଂ, ଗଂ, ଦଂ, ସଂ, ହଂ

| ହସ : ହଂସ | ଦଶନ : ଦଂଶନ | ମାସ : ମାଂସ |
|---|---|---|

ଅଂଶ   ହଂସ   ସିଂହ   ହିଂସା   ବଂଶୀ

ବଂଶ   କଂସ   ମାଂସ   ଅଂଶୁ   ଅଂଶୀ

ବିଂଶତି   ସଂସାର   ସଂଶୟ   ମୀମାଂସା

କିଂଶୁକ   ସଂଯୋଗ   ସଂବାଦ   ଦଂଶନ

ଆକାଂକ୍ଷା   ମାଂସାଶୀ   ଅକ୍ଷାଂଶ   ଶୃଂଖଳା



ସିଂହ ପଶୁରାଜ ଅଟେ।
ସିଂହ ବୁଲଇ ଘୋର ବନେ।
ନାଶଇ ବହୁ ଜୀବଗଣେ।
ଜୀବହିଂସା ନ କର।
ହଂସ ଜଳରେ ସଂତରଣ କରେ।
ବଂଶୀ ବାଜୁଛି ନଦୀ ତୀରେ।
ହଂସ ଖେଳୁଛି ନଦୀ ନୀରେ।



# ଃ ବିସର୍ଗ ଯୋଗ

ଆ + ଃ = ଆଃ　　ତ + ଃ = ତଃ

ନି + ଃ = ନିଃ　　ଦୁ + ଃ = ଦୁଃ

ଆଃ, ଓଃ, ତଃ, ଦୁଃ, ନିଃ

ଆ : ଆଃ　　ବା ବା : ବାଃ ବାଃ

| | | | |
|---|---|---|---|
| ଦୁଃଖ | ଦୁଃଖିତ | ଦୁଃସମୟ | ନିଃସଂଶୟ |
| ଦୁଃଖୀ | ନିଃଶେଷ | ଦୁଃସାହସ | ନିଃସହାୟ |
| ବିଶେଷତଃ | ଫଳତଃ | ମୂଳତଃ | ଦୁଃସାହସୀ |

ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ, ଲାଗିଛି ସଦା ସଂସାରେ ।

# ଁ ଚନ୍ଦ୍ରବିନ୍ଦୁ ଯୋଗ

ଉ + ଁ = ଉଁ　　ଗା + ଁ = ଗାଁ

କ + ଁ = କଁ　　ବା + ଁ = ବାଁ

ଅଁ, ଆଁ, ଇଁ, ଉଁ, ଏଁ, କଁ, ଖଁ, ଗଁ, ସଁ, ହଁ

ଆ : ଆଁ　　ଗା : ଗାଁ　　ନା : ନାଁ　　ଦିଅ : ଦିଅଁ　　କିଆ : କିଆଁ

| | | | |
|---|---|---|---|
| କାହିଁ | ପାଉଁଶ | ଚଅଁର | କଅଁଳ |
| ନାହିଁ | ଭଉଁରୀ | ଚଉଁରୀ | ଯାଆଁଳା |

ଅଁଳା ଫଳ କଷା ଲାଗେ । ପାଉଁଶ ତଳେ ନିଆଁ ଅଛି ।
ଲବ କୁଶ ଦୁହେଁ ଯାଆଁଳା ଭାଇ । ସାନ ବଡ଼ ବାରି ହୁଅଇ ନାହିଁ ।





ଚକାଚକା ଭଉଁରୀ । ମାମୁଘର ଚଉଁରୀ ।

# ୍ ହଲନ୍ତ ଯୋଗ

୍

କ୍, ଖ୍, ଗ୍, ଘ୍, ଚ୍, ଛ୍, ଜ୍, ତ୍, ଦ୍

| | | | |
|---|---|---|---|
| ସତ : ସତ୍ | ଚକ : ଚକ୍ | ବେଶ : ବେଶ୍ | ତୁମେ ଦେଖ : ତୁ ଦେଖ୍ |



| | | | |
|---|---|---|---|
| ସତ୍ | ଅସତ୍ | ଜଗତ୍ | ହଠାତ୍ |
| ଚିତ୍ | ଈଷତ୍ | ଶରତ୍ | ଝକ୍‌ଝକ୍ |
| ଚିତ୍କାର | ଉତ୍କ୍ଷେପଣ | ଲେକ୍‌ଚରର୍ | ଧକ୍‌ଧକ୍ |

ଝୁଲ୍ ରେ ହାତୀ ଝୁଲ୍ । ବାଆ ପାଣି ଖାଇ ଫୁଲ୍ ।

ମୋର ଦୁଇ ଆଖି, ଦୁଇ କାନ, ଦୁଇ ହାତ, ଦୁଇ ଗୋଡ଼ । ଆଖି ନ ଥିଲେ କିଛି ଦିଶେନାହିଁ । କାନ ନ ଥିଲେ କିଛି ଶୁଭେନାହିଁ । ହାତ ନ ଥିଲେ କିଛି କାମ କରି ହୁଏନାହିଁ । ଗୋଡ଼ ନ ଥିଲେ ଚାଲି ହୁଏନାହିଁ । ମୁଁ ଜିଭରେ କଥା କହେଁ ଓ ଯାହା ଖାଏଁ, ତାହା ମିଠା କି ଖଟା, ପିତା କି କଷା, ଜାଣିପାରେଁ ।

ମୁଁ ଡାହାଣ ହାତରେ ପୋଥି ଧରିଅଛି । ବାଁ ହାତରେ ଛତା ଧରିଛି । ମୋ ମଥାରେ କଳା କେଶ, ଆଈ ମଥାରେ ଧଳା କେଶ । ମୋ ନାକରେ ଦୁଇଟି ପୁଡ଼ା । ନାକପୁଡ଼ା ବାଟେ ପବନ ଯା ଆସ କରୁଛି । ମୋ ପିଠିରେ ଗୋଟିଏ ଘା ହୋଇଥିଲା, ଶୁଖି ଗଲାଣି ।

ତୁ, ତୁ, ତୁ, ଡାକିଲି ମୁହିଁ,
ଦୌଡ଼ି ଆସିଲୁ କୁକୁର ତୁହି ।
ଆଉଁସି ଦେବି ରେ ଦେହ ତୋହର,
ଖାଇବାକୁ ଦେବି ଭାତ ମୋହର ।
ମୋ କଥା ମାନିବୁ ଜାଣଇ ମୁହିଁ,
ଯେଣେ ଯିବି ମୁହିଁ ଯିବୁ ରେ ତୁହି ।





ଜାଇ, ଜୁଇ, ମଲ୍ଲୀ, ମାଧବୀ, ମାଳତୀ, ଗୋଲାପ, ନିଆଳୀ, କେତକୀ, ସେବତୀ
ନାନା ଜାତି ଫୁଲ ଦେବି ତୋତେ ଆଣି, ଦେଖି ତୁ ହସିବୁ ଆରେ ଧନମଣି ।

# ଦ୍ୱିତୀୟ ଭାଗ

## ଯ-ଫଳା ୍ୟ

| | | |
|---|---|---|
| କ୍ + ୟ = କ୍ୟ | ୍ୟ | ଖ୍ + ୟ = ଖ୍ୟ |
| ବାକ୍ୟ = ବାକ୍ୟ | | ମୁଖ୍ୟ = ମୁଖ୍ୟ |
| କ୍ୟ = କ୍ୟ | | ଖ୍ୟ = ଖ୍ୟ |

ଗ୍ୟ, ଘ୍ୟ, ଚ୍ୟ, ଜ୍ୟ, ଟ୍ୟ, ଠ୍ୟ, ଡ୍ୟ, ଢ୍ୟ, ଣ୍ୟ, ତ୍ୟ, ଥ୍ୟ, ଦ୍ୟ,ଧ୍ୟ, ନ୍ୟ, ପ୍ୟ,
ବ୍ୟ, ଭ୍ୟ, ମ୍ୟ, ଯ୍ୟ, ଲ୍ୟ, ଶ୍ୟ, ଷ୍ୟ, ସ୍ୟ, ହ୍ୟ, କ୍ଷ୍ୟ

ମୁଖ : ମୁଖ୍ୟ ଧାନ : ଧ୍ୟାନ ଭାଗ : ଭାଗ୍ୟ ଧନ : ଧନ୍ୟ ଲକ୍ଷ : ଲକ୍ଷ୍ୟ

| | | | | |
|---|---|---|---|---|
| ଐକ୍ୟ | ବିଦ୍ୟା | ବୈଦ୍ୟ | ସଭ୍ୟ | ମୁଖ୍ୟ |
| ସାଧ୍ୟ | ମୂଲ୍ୟ | ଶଯ୍ୟା | ଖ୍ୟାତି | ନିତ୍ୟ |
| ମୃତ୍ୟୁ | ନ୍ୟାୟ | ଭୃତ୍ୟ | ସହ୍ୟ | ଶ୍ୟାମ |
| ନସ୍ୟ | ଶିଷ୍ୟ | ବୈଶ୍ୟ | ହାସ୍ୟ | ଶସ୍ୟ |
| ବାଧ୍ୟ | ନ୍ୟାୟ୍ୟ | ଦସ୍ୟୁ | ତ୍ୟାଗ | କନ୍ୟା |

| | | | |
|---|---|---|---|
| ଅବଶ୍ୟ | ଆଳସ୍ୟ | ମନୁଷ୍ୟ | ଅଭ୍ୟାସ |
| ସାହାଯ୍ୟ | ଅସଂଖ୍ୟ | ସାମାନ୍ୟ | ସୌଭାଗ୍ୟ |
| ବ୍ୟବସାୟ | ଅଧ୍ୟବସାୟ | ଆବଶ୍ୟକ | ବିଦ୍ୟାଳୟ |
| ଜ୍ୟୋତିଷ | ପ୍ରତ୍ୟେକ | ବିଦ୍ୟୁତ୍ | ସାହିତ୍ୟିକ |

କୁବାକ୍ୟ କେବେଁ ନ କହିବ, ଆଳସ୍ୟ କେବେ ନ କରିବ।
ମିଥ୍ୟାକୁ ପାପ ବୋଲି ଜାଣି, କହିବ ସଦା ସତ୍ୟବାଣୀ।

# ର-ଫଳା ୍ର

| | | |
|---|---|---|
| କ୍ + ର = କ୍ର | | ଗ୍ + ର = ଗ୍ର |
| ଚକ୍‌ର = ଚକ୍ର | ୍ର | ଆଗ୍‌ରହ = ଆଗ୍ରହ |
| କ୍‌ର = କ୍ର | | ଗ୍‌ର = ଗ୍ର |

ଘ୍ର, ଛ୍ର, ଟ୍ର, ଡ୍ର, ଢ୍ର, ତ୍ର, ଥ୍ର,
ଦ୍ର, ଧ୍ର, ପ୍ର, ଫ୍ର, ବ୍ର, ଭ୍ର, ମ୍ର, ଶ୍ର, ସ୍ର, ହ୍ର

ଛାତ : ଛାତ୍ର    ନିଦା : ନିଦ୍ରା    ମୁଦା : ମୁଦ୍ରା    ଗାତ : ଗାତ୍ର

| | | | | | |
|---|---|---|---|---|---|
| ଚକ୍ର | ବଜ୍ର | ରୌଦ୍ର | ଭ୍ରାତା | ଗୃଧ୍ର | ଛତ୍ର |
| ନିଦ୍ରା | ପ୍ରିୟ | ଗ୍ରାମ | କ୍ରୀଡ଼ା | ହ୍ରଦ | ଚିତ୍ର |
| ଶୀଘ୍ର | ତ୍ରାସ | ମିତ୍ର | ମୁଦ୍ରା | ଶ୍ରମ | ତାମ୍ର |

| | | | | |
|---|---|---|---|---|
| ଗ୍ରହଣ | ସମ୍ରାଟ୍ | ଶ୍ରୀମାନ୍ | ସମୁଦ୍ର | ଶ୍ରବଣ |
| ପ୍ରବେଶ | ସମ୍ରାଜ୍ଞୀ | ଅନିଦ୍ରା | ସହସ୍ର | ପ୍ରକାଶ |
| ବିଶ୍ରାମ | ହରିଦ୍ରା | ପ୍ରଶଂସା | କୃତ୍ରିମ | ଭ୍ରମଣ |

ପରିଶ୍ରମ କର ପ୍ରତି ଦିବସ ।
କଦାଚ ନ ହୁଅ ଆଳସ୍ୟ ବଶ ।

ସହସ୍ର ସହସ୍ର ଗ୍ରାମ ନଦୀର କୂଳରେ ।
ନଦୀ ସ୍ରୋତ ମିଶେ ଯାଇ ସମୁଦ୍ର ଜଳରେ ।

ପ୍ରଜାପତିଟି ହରଷରେ ।
ବସିଛି ଫୁଲର ଉପରେ ।



# ରେଫ ଯୋଗ

ର୍ + କ = ର୍କ

ଅରକ = ଅର୍କ

ରକ = ର୍କ



ର୍ + ଖ = ର୍ଖ

ମୂରଖ = ମୂର୍ଖ

ରଖ = ର୍ଖ

ର୍ଗ, ର୍ଘ, ର୍ଚ, ର୍ଛ, ର୍ଜ, ର୍ଝ, ର୍ଟ, ର୍ଡ, ର୍ଣ, ର୍ତ, ର୍ଥ, ର୍ଦ, ର୍ଧ, ର୍ପ, ର୍ଫ, ର୍ବ, ର୍ଭ, ର୍ମ, ର୍ଯ, ର୍ଶ, ର୍ଷ, ର୍ସ, ର୍ହ

ସପ : ସର୍ପ　ବାଲି : ବାର୍ଲି　କତା : କର୍ତା　ପବ : ପର୍ବ

| | | | | |
|---|---|---|---|---|
| ସର୍ବ | ମୂର୍ଖ | ଦୀର୍ଘ | କର୍ଣ୍ଣ | ଅର୍ଥ |
| ଗର୍ବ | ତର୍କ | ଅର୍ଘ | ବର୍ଣ | ବ୍ୟର୍ଥ |
| ଦର୍ପ | କର୍ମ | ବର୍ମ | ଗର୍ତ୍ତ | ହର୍ଷ |
| ସର୍ପ | ଧର୍ମ | ଘର୍ମ | ଗର୍ଭ | ବର୍ଷ |
| କର୍କଶ | ବିସର୍ଗ | ଦୁର୍ଜ୍ଜନ | ନିର୍ଝର | ନିର୍ଭୟ |
| ଶର୍କରା | ଦୁର୍ଗତି | ବର୍ଜ୍ଜନ | ନିର୍ବୋଧ | ସମର୍ଥ |
| ବାର୍ଷିକ | ଦୁର୍ବଳ | ନିର୍ଧନ | ଆଦର୍ଶ | ବିମର୍ଷ |
| କର୍ପୂର | ଦୁର୍ନାମ | ନିର୍ଦ୍ଦୋଷ | ନିର୍ମାଣ | ପରାମର୍ଶ |

ନିର୍ଦ୍ଦୟ କର୍କଶ କଥା ମୁଖେ ନ କହିବ,
ମଧୁର ବଚନ କହି ସକଳେ ତୋଷିବ।



ପର୍ବତ ଦେହରୁ ବର୍ଷାକାଳରେ, ବହଇ ନିର୍ଝର ଧାରା ଝର୍ଝରେ।
ଡାମରା କାଉରେ ଡାମରା କାଉ, ପର୍ବତେ ପର୍ବତେ ବୋବାଉଥାଉ।

ଚକ୍ର : ତର୍କ　ଅଗ୍ର : ବର୍ଗ　ଶୀଘ୍ର : ଦୀର୍ଘ　ଛାତ୍ର : ଗର୍ତ

ଗୃଧ୍ର : ଅର୍ଧ　ବିପ୍ର : ସର୍ପ　ତୀବ୍ର : ଗର୍ବ　ଶୁଭ୍ର : ଗର୍ଭ

# ଳ-ଫଳା ୍ଳ



କ୍ + ଳ = କ୍ଳ

ଶୁକ୍ଳ = ଶୁକ୍ଳ

କ୍ଳ = କ୍ଳ

ମ୍ + ଳ = ମ୍ଳ

ଅମ୍ଳ = ଅମ୍ଳ

ମ୍ଳ = ମ୍ଳ

କ୍ଳ ଗ୍ଳ ପ୍ଳ ବ୍ଳ ମ୍ଳ ଶ୍ଳ ହ୍ଳ

କେଶ : କ୍ଳେଶ   ଶୋକ : ଶ୍ଳୋକ   ଶେଷ : ଶ୍ଳେଷ

| | | | |
|---|---|---|---|
| କ୍ଳେଶ | ଅମ୍ଳ | କ୍ଳୀବ | ଶୁକ୍ଳ |
| ମ୍ଳାନ | ଶ୍ଳୋକ | ଗ୍ଳାନି | ଶ୍ଳେଷ |
| ପ୍ଳାବନ | ଶ୍ଳାଘା | ଅଶ୍ଳୀଳ | ବିପ୍ଳବ |

# ଲ-ଫଳା ୍ଲ



ହ୍ + ଲ = ହ୍ଲ

ଓହ୍ଲା = ଓହ୍ଲା

ହ୍ଲା = ହ୍ଲା

ହ୍ + ଲ = ହ୍ଲ

ଆହ୍ଲାଦ = ଆହ୍ଲାଦ

ହ୍ଲା = ହ୍ଲା

କ୍ଲ ଗ୍ଲ ପ୍ଲ ବ୍ଲ ସ୍ଲ ହ୍ଲ

କ୍ଲବ୍, ଗ୍ଲାସ୍, ପ୍ଲେଟ୍, ବ୍ଲକ୍, ଗେହ୍ଲା, ପ୍ରହ୍ଲାଦ, ଓହ୍ଲାଇବା

# ଲ୍ + ଲ = ଲ୍ଲ

ପଲ୍ଲବ, ପ୍ରଫୁଲ୍ଲ, ଉଲ୍ଲଂଘନ, ଉଲ୍ଲାସ, ବଲ୍ଲଭ, କଲ୍ଲୋଳ, ଭଲ୍ଲୁକ, ପଲ୍ଲୀ, ଦିଲ୍ଲୀ, ମଲ୍ଲିକା, ଉଲ୍ଲେଖ

ବ୍ୟାଘ୍ର ପରି ଭଲ୍ଲୁକ ମଧ୍ୟ ହିଂସ୍ର ଅଟେ।
ଭଲ୍ଲୁକ ଅରଣ୍ୟରେ ଥାଏ।
କାହାରିକୁ କ୍ଳେଶ ନ ଦିଅ କେବେ,
ସଂସାରେ ପ୍ରଶଂସା ଲଭିବ ତେବେ।
ପ୍ରହ୍ଲାଦ ଆହ୍ଲାଦେ ଗାଉଛି ଗୀତ,
ମୁଁ ଗାଇବି ମିଶି ତାହା ସହିତ।



# ମ୍ + ବ = ମ୍ବ

ମ୍ + ବ = ମ୍ବ

ଆମ୍‌ବ = ଆମ୍ବ

ମ୍‌ବ = ମ୍ବ

| | | | | | | |
|---|---|---|---|---|---|---|
| ଆମ୍ବ | ଲମ୍ବ | ଖମ୍ବ | ଡିମ୍ବ | ଶିମ୍ବ | ଲେମ୍ବୁ | ତମ୍ବୁ |
| ଚୁମ୍ବକ | ସମ୍ବଳ | ଡାଳିମ୍ବ | ବିଳମ୍ବ | କୁଟୁମ୍ବ | କମ୍ବଳ | ବିମ୍ବାଧର |

ଆମ୍ବ ବଉଳଇ ଫଗୁଣ ମାସେ
ଦିଗ ଚହଟଇ ତାର ସୁବାସେ ।

## ୱ-ଫଳା ୍ୱ

କ୍ + ୱ = କ୍ୱ

ପକ୍‌ୱ = ପକ୍ୱ

କ୍‌ୱ = କ୍ୱ

ଶ୍ + ୱ = ଶ୍ୱ

ବିଶ୍‌ୱ = ବିଶ୍ୱ

ଶ୍‌ୱ = ଶ୍ୱ

କ୍ୱ, ଟ୍ୱ, ଡ୍ୱ, ତ୍ୱ, ଥ୍ୱ, ଦ୍ୱ, ଧ୍ୱ, ନ୍ୱ, ଲ୍ୱ, ଶ୍ୱ, ସ୍ୱ, ହ୍ୱ

ଦୀପ : ଦ୍ୱୀପ    ସର : ସ୍ୱର    ଦାରା : ଦ୍ୱାରା    ବିଲ : ବିଲ୍ୱ

| | | | | |
|---|---|---|---|---|
| ଜ୍ୱର | ଶ୍ୱେତ | ଧ୍ୱନି | ପକ୍ୱ | ସ୍ୱାମୀ |
| ଜ୍ୱାଳା | ବିଶ୍ୱ | ଧ୍ୱଂସ | ବିଲ୍ୱ | ସ୍ୱାଦ |
| ଦ୍ୱିଜ | ଦ୍ୱେଷ | ସାଧ୍ୱୀ | ଦ୍ୱୀପ | ପୃଥ୍ୱୀ |
| ଜିହ୍ୱା | ଶ୍ୱାସ | ସ୍ୱର | ତ୍ୱରା | ଈଶ୍ୱର |
| ନିଶ୍ୱାସ | ଗହ୍ୱର | ବିହ୍ୱଳ | ରାଜତ୍ୱ | ଆଶ୍ୱିନ |
| ପଲ୍ୱଳ | ଆହ୍ୱାନ | ତେଜସ୍ୱୀ | ତପସ୍ୱୀ | ସତ୍ୱର |
| ଗୁରୁତ୍ୱ | ବୀରତ୍ୱ | ଅନ୍ୱେଷଣ | ପ୍ରଜ୍ୱଳନ | ତପସ୍ୱିନୀ |

ଜଣେ ଲୋକ ଗୋଟିଏ ଅଶ୍ୱକୁ ଧରିଅଛି । ଅଶ୍ୱ ଚଢ଼ିବାକୁ ଶିଖ ।



ଦ୍ୱାର ଦ୍ୱାର ବୁଲି ମାଗଇ ଦୁଃଖୀ,
ଭିକ ପାଇଲେ ସେ ହୁଅଇ ସୁଖୀ ।

# ନ-ଫଳା ୍ନ

ଗ୍ + ନ = ଗ୍ନ
ଭଗ୍‌ନ = ଭଗ୍ନ
ଗ୍‌ନ = ଗ୍ନ

୍ନ

ତ୍ + ନ = ତ୍ନ
ଯତ୍‌ନ = ଯତ୍ନ
ତ୍‌ନ = ତ୍ନ

ଘ୍ନ, ତ୍ନ, ପ୍ନ, ମ୍ନ, ଶ୍ନ, ସ୍ନ, ହ୍ନ

| ସାନ : ସ୍ନାନ | ରତ : ରତ୍ନ | ନିମ : ନିମ୍ନ | ବହି : ବହ୍ନି |
|---|---|---|---|
| ଅଗ୍ନି | ଯତ୍ନ | ସ୍ୱପ୍ନ | ସ୍ନେହ |
| ବିଘ୍ନ | ରତ୍ନ | ପ୍ରଶ୍ନ | ସ୍ନାୟୁ |
| ଲଗ୍ନ | ସ୍ନାନ | ନିମ୍ନ | ପ୍ରାତଃସ୍ନାନ |
| ମଗ୍ନ | ବହ୍ନି | ଚିହ୍ନ | ମଧ୍ୟାହ୍ନ |
| ଭଗ୍ନ | ଆହ୍ନିକ | ବିଘ୍ନରାଜ | ଆଗ୍ନେୟଗିରି |

ପ୍ରସନ୍ନର ମୁଦିରେ ବହୁମୂଲ୍ୟ ରତ୍ନ ଅଛି । ମୁଁ ଗୋଟିଏ ସ୍ୱପ୍ନ ଦେଖିଅଛିଁ ।
ରତ୍ନାକର ମଧ୍ୟାହ୍ନ କାଳରେ ସ୍ନାନ କଲା ।

ଯତ୍ନ କଲେ ରତ୍ନ ମିଳେ ଏ ସାର ବଚନ,
ମନେ ରଖିଥିବ ସଦା ଆହେ ଶିଶୁଗଣ ।
ଆ ରେ ଜହ୍ନମାମୁ ଶରଦ ଶଶୀ,
ମୋ କାହ୍ନୁ ହାତରେ ପଡ଼ ରେ ଖସି ।



## ନ୍ + ନ = ନ୍ନ

ନ୍ + ନ = ନ୍ନ
ଭିନ୍‌ନ = ଭିନ୍ନ
ନ୍‌ନ = ନ୍ନ

ନ୍ନ

ନ୍ + ନ = ନ୍ନ
ଅନ୍‌ନ = ଅନ୍ନ
ନ୍‌ନ = ନ୍ନ

| | | | | |
|---|---|---|---|---|
| ଅନ୍ନ | ଭିନ୍ନ | ପନ୍ନଗ | ଅବସନ୍ନ | ସନ୍ନିଧାନ |
| ଉନ୍ନୀତ | ସନ୍ନ୍ୟାସୀ | ବିଭିନ୍ନ | ଉନ୍ନୟନ | ଜଗନ୍ନାଥ |

ଅନ୍ନ ଭୋଜନ କର ।

# ମ-ଫଳା ୍ମ

ଗ୍ + ମ = ଗ୍ମ
ଯୁଗ୍‌ମ = ଯୁଗ୍ମ
ଗ୍‌ମ = ଗ୍ମ

**୍ମ**

ତ୍ + ମ = ତ୍ମ
ଆତ୍‌ମ = ଆତ୍ମ
ତ୍‌ମ = ତ୍ମ

ଙ୍ମ, ଣ୍ମ, ଦ୍ମ, ଥ୍ମ, ଦ୍ମ, ଧ୍ମ, ନ୍ମ, ଶ୍ମ, ଷ୍ମ, ସ୍ମ, ହ୍ମ ଲ୍ମ।

| ପଦ : ପଦ୍ମ | ରଶି : ରଶ୍ମି | ଜନ : ଜନ୍ମ | ଆତ : ଆତ୍ମ |
|---|---|---|---|
| ପଦ୍ମ | ଜନ୍ମ | ବ୍ରହ୍ମ | ସ୍ମରଣ |
| ଛଦ୍ମ | ଗୁଳ୍ମ | ଭସ୍ମ | ବ୍ରାହ୍ମଣ |
| ସଦ୍ମ | ରଶ୍ମି | ଆତ୍ମା | ଶ୍ମଶାନ |
| ସୂକ୍ଷ୍ମ | ଲକ୍ଷ୍ମୀ | ଭୀଷ୍ମ | ବାଲ୍ମୀକି |

ସ୍ମୃତି ଊଷ୍ମ ଶ୍ମଶ୍ରୁ ଶାଲ୍ମଳୀ ଉନ୍ମାଦ
ମୃଣ୍ମୟ ପଦ୍ମିନୀ ପରାଙ୍ମୁଖ ଅକସ୍ମାତ୍ ହିରଣ୍ମୟ

ଫୁଟିଅଛି ପଦ୍ମଫୁଲ ସରୋବର ଜଳେ।
ଆସ ହେ ତୋଳିବା ପଦ୍ମ ମିଳିଣ ସକଳେ।



## ମ୍ + ମ = ମ୍ମ

ମ୍ + ମ = ମ୍ମ
ସମ୍‌ମତି = ସମ୍ମତି
ମ୍‌ମ = ମ୍ମ

**ମ୍ମ**

ମ୍ + ମ = ମ୍ମ
ସମ୍‌ମାନ = ସମ୍ମାନ
ମ୍‌ମା = ମ୍ମା

ସମ୍ମତି ସମ୍ମାନ ସମ୍ମିଳନୀ ସମ୍ମୁଖ
ସମ୍ମେଳନ ସମ୍ମୋହନ ସମ୍ମାନିତ ସମ୍ମାନନୀୟ

ଗ୍ରୀଷ୍ମକାଳରେ ଅନେକ ଫୁଲ ଫୁଟେ। ସମ୍ମୁଖରେ ଗୋଲାପ କଢ଼ି ଦେଖ। ଫୁଟୁ, ତୋତେ ଗୋଟିଏ, ପଦ୍ମାକୁ ଗୋଟିଏ ଦେବି।

# ଯୁକ୍ତାକ୍ଷର

## (ବଂଧନୀ ମଧ୍ୟରେ ଶବ୍ଦଗୁଡ଼ିକର ସୁପ୍ରଚଳିତ ସରଳ ରୂପ ରହିଛି।)

ଙ୍ + କ = ଙ୍କ ..... ପଙ୍କ, ଶଙ୍କା, ଅଙ୍କୁର, ସଙ୍କେତ (ପଂକ, ଶଂକା, ଅଂକୁର, ସଂକେତ)

ଙ୍ + ଖ = ଙ୍ଖ ..... ଶଙ୍ଖ, ଶୃଙ୍ଖଳା (ଶଂଖ, ଶୃଂଖଳା)

ଙ୍ + ଗ = ଙ୍ଗ ..... ସଙ୍ଗ, ସଙ୍ଗୀତ, ଅଙ୍ଗୁଳି (ସଂଗ, ସଂଗୀତ, ଅଂଗୁଳି)

ଙ୍ + ଘ = ଙ୍ଘ ..... ଜଙ୍ଘ, ଲଙ୍ଘନ (ଜଂଘ, ଲଂଘନ)

ପଙ୍କଜ ଶଙ୍ଖ ବଜାଇଣ, ରଙ୍ଗେ ଲଙ୍ଘିଲା ଘୋର ବନ।
(ପଂକଜ ଶଂଖ ବଜାଇଣ, ରଂଗେ ଲଂଘିଲା ଘୋର ବନ।)

ଞ୍ + ଚ = ଞ୍ଚ .... ଚଞ୍ଚଳ, କାଞ୍ଚନ, ସଞ୍ଚୟ (ଚଂଚଳ, କାଂଚନ, ସଂଚୟ)

ଞ୍ + ଛ = ଞ୍ଛ .... ବାଞ୍ଛା, ଲାଞ୍ଛନା (ବାଂଛା, ଲାଂଛନା)

ଞ୍ + ଜ = ଞ୍ଜ .... ଅଞ୍ଜଳି, ପଞ୍ଜିକା, ଖଞ୍ଜ, ଗଞ୍ଜନା (ଅଂଜଳି, ପଂଜିକା, ଖଂଜ, ଗଂଜନା)

ଞ୍ + ଝ = ଞ୍ଝ .... ପଞ୍ଝା, ପଞ୍ଝାଏ (ପଂଝା, ପଂଝାଏ)



ପାଞ୍ଜି ଉପରେ ଦୁଆତ ରଖ, କାଗଜ ଧର, ସଙ୍ଗୀତ ଲେଖ।
ପଞ୍ଝାଏ ଖଞ୍ଜ ବସି ବସି, କଥା କହନ୍ତି ହସି ହସି
କାଞ୍ଚନେ ବାଞ୍ଛା ନାହିଁ ମୋର, ମାଗଇ ପ୍ରଭୁ କୃପା ତୋର।

ଣ୍ + ଟ = ଣ୍ଟ ..... କଣ୍ଟକ, ଘଣ୍ଟା (କଂଟକ, ଘଂଟା)

ଣ୍ + ଠ = ଣ୍ଠ ..... କଣ୍ଠ, ଉତ୍କଣ୍ଠା, କୁଣ୍ଠିତ (କଂଠ, ଉତ୍କଂଠା, କୁଂଠିତ)

ଣ୍ + ଡ = ଣ୍ଡ ..... କୁଣ୍ଡ, ମୁଣ୍ଡ, ଚାଣ୍ଡାଳ, ପଣ୍ଡିତ, ଗଣ୍ଡୂଷ (କୁଂଡ, ମୁଂଡ, ଚାଂଡାଳ, ପଂଡିତ, ଗଂଡୂଷ)

ଣ୍ + ଢ = ଣ୍ଢ ..... ଷଣ୍ଢ, ମେଣ୍ଢା (ଷଂଢ, ମେଂଢା)

ଣ୍ + ଣ = ଣ୍ଣ ..... କ୍ଷୁଣ୍ଣ, ବିଷଣ୍ଣ

ଘଣ୍ଟି ବାଜଇ ଠନ୍ ଠନ୍। ଘଣ୍ଟା ବାଜଇ ଢଂ ଢଂ।
ମେଣ୍ଢା ମୁଣ୍ଡଟି ବଡ଼ ଟାଣ। ତା ମୁଣ୍ଡିଆକୁ ସାବଧାନ।
ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ ମାଧବ ବସିଛି ଯାଇ।
ମାତାଙ୍କ ଆଡ଼କୁ ଅନାଇ ଅନାଇ ମାଟି ଦେଉଅଛି ଖାଇ।



ନ୍ + ତ = ନ୍ତ ..... ଦାନ୍ତ, ଚିନ୍ତା ସନ୍ତୋଷ, ଶାନ୍ତ (ଦାଂତ, ଚିଂତା, ସଂତୋଷ, ଶାଂତ)

ନ୍ + ଥ = ନ୍ଥ ..... କନ୍ଥା, ମନ୍ଥନ, ରୋମନ୍ଥ (କଂଥା, ମଂଥନ, ରୋମଂଥ)

ନ୍ + ଦ = ନ୍ଦ ..... ଆନନ୍ଦ, ମନ୍ଦିର, ସିନ୍ଦୂର, ସନ୍ଦେହ (ଆନଂଦ, ମଂଦିର, ସିଂଦୂର, ସଂଦେହ)

ନ୍ + ଧ = ନ୍ଧ ..... ଅନ୍ଧ, ସନ୍ଧି, ସନ୍ଧ୍ୟା, ବନ୍ଧୁ, ବନ୍ଧୁକ (ଅଂଧ, ସଂଧି, ସଂଧ୍ୟା, ବଂଧୁ, ବଂଧୁକ)

ନ୍ + ନ = ନ୍ନ ..... ଅନ୍ନ, ଭିନ୍ନ, ଛିନ୍ନ

ଧନ୍ୟ ଯେ ସଦା ବାସ କରେ, ଶାନ୍ତି ସନ୍ତୋଷ ଆନନ୍ଦରେ ।
ଦରିଦ୍ର ପିନ୍ଧେ ଛିଣ୍ଡା କନ୍ଥା, ଅନ୍ଧକୁ ନ ଦିଶଇ ପନ୍ଥା ।

ମ୍ + ପ = ମ୍ପ .... ସମ୍ପଦ, ସମ୍ପନ୍ନ, ସମ୍ପାଦନ, କମ୍ପିତ (ସଂପଦ, ସଂପନ୍ନ, ସଂପାଦନ, କଂପିତ)

ମ୍ + ଫ = ମ୍ଫ ... ଲମ୍ଫ, ଗୁମ୍ଫା, ବାମ୍ଫୀ (ଲଂଫ, ଗୁଂଫା, ବାଂଫୀ)

ମ୍ + ବ = ମ୍ବ ..... ସମ୍ବଳ, ସମ୍ବାଦ, ସମ୍ବୋଧନ, କମ୍ବୁ, ଅମ୍ବୁ (ସଂବଳ, ସଂବାଦ, ସଂବୋଧନ, କଂବୁ, ଅଂବୁ)

ମ୍ + ଭ = ମ୍ଭ ... ରମ୍ଭା, ଗମ୍ଭୀର, ସମ୍ଭୋଗ, କୁମ୍ଭୀର (ରଂଭା, ଗଂଭୀର, ସଂଭୋଗ, କୁଂଭୀର)

ମ୍ + ମ = ମ୍ମ ... ସମ୍ମତ, ସମ୍ମାନ, ସମ୍ମିଳିତ, ସମ୍ମେଳନ, ସମ୍ମୋହନ

ଗୁମ୍ଫାଟି ଅତି ସୁନିର୍ମଳ, ବାମ୍ଫୀର ଜଳ ସୁଶୀତଳ ।
ସମ୍ପଦ କାଳେ ସର୍ବେ ସଖା, ବିପଦେ ନ ଦିଅନ୍ତି ଦେଖା ।
କୁମ୍ଭୀର ବଡ଼ ଭୟଂକର, ନାଶଇ କେତେ ନାରୀ ନର ।

ଲ୍ + କ = ଲ୍କ / ଲ୍‌କ .... ବଲ୍କଳ, ଶୁଲ୍କ (ବଲ୍‌କଳ, ଶୁଲ୍‌କ)

ଲ୍ + କ = ଲ୍କ / ଲ୍‌କ .... ଉଲ୍କା (ଉଲ୍‌କା)

ଷ୍ + କ = ଷ୍କ .... ଶୁଷ୍କ, ନିଷ୍କର, ଦୁଷ୍କର, ପରିଷ୍କାର

ସ୍ + କ = ସ୍କ .... ତସ୍କର, ନମସ୍କାର, ପୁରସ୍କାର, ଅୟସ୍କାନ୍ତ (ଅୟସ୍କାଂତ)

କ୍ + କ = କ୍କ / କ୍‌କ .... ଚିକ୍କଣ, ଧିକ୍କାର, କୁକ୍କୁଟ (ଚିକ୍‌କଣ, ଧିକ୍‌କାର, କୁକ୍‌କୁଟ)

ବ୍ + ଜ = ବ୍ଜ / ବ୍‌ଜ .... ଅବ୍ଜ, କୁବ୍ଜ (ଅବ୍‌ଜ, କୁବ୍‌ଜ)

ଜ୍ + ଜ = ଜ୍ଜ .... ଉଜ୍ଜଡ଼, କଜ୍ଜଳ, ମଜ୍ଜନ, ସଜ୍ଜନ, ଲଜ୍ଜା, ଲଜ୍ଜିତ



ଗ୍ + ଣ = ଗ୍ଣ / ଗ୍‌ଣ .... ଭୁଗ୍ଣ (ଭୁଗ୍‌ଣ)

ଷ୍ + ଣ = ଷ୍ଣ .... କୃଷ୍ଣ, ବିଷ୍ଣୁ, ସହିଷ୍ଣୁ, ବୈଷ୍ଣବ

କ୍ଷ୍ + ଣ = କ୍ଷ୍ଣ / କ୍ଷ୍‌ଣ .... ତୀକ୍ଷ୍ଣ (ତୀକ୍ଷ୍‌ଣ)

ଣ୍ + ଣ = ଣ୍ଣ .... କ୍ଷୁଣ୍ଣ, ଅକ୍ଷୁଣ୍ଣ

କ୍ + ତ = କ୍ତ .... ରକ୍ତ, ଶକ୍ତି, ତିକ୍ତ, ବିଭକ୍ତ, ବକ୍ତୃତା

ପ୍ + ତ = ପ୍ତ .... ଗୁପ୍ତ, ସୁପ୍ତ, ଲିପ୍ତ, କ୍ଷିପ୍ତ

ସ୍ + ତ = ସ୍ତ .... ଅସ୍ତ, ବିସ୍ତାର, ନିସ୍ତାର, ସ୍ତବ୍ଧ, ପ୍ରଶସ୍ତ

ତ୍ + ତ = ତ୍ତ .... ଉତ୍ତମ, ଉତ୍ତର, ଉତ୍ତାପ, ମତ୍ତ

ତ୍ + କ = ତ୍କ .... ଉତ୍କଳ, ବଳାତ୍କାର, ଉତ୍କୃଷ୍ଟ, ଉତ୍କଣ୍ଠା (ଉତ୍କଂଠା)

ତ୍ + ଥ = ତ୍ଥ /ତ୍‌ଥ ... ଉତ୍ଥାନ, ଉତ୍ଥାପନ (ଉତ୍‌ଥାନ, ଉତ୍‌ଥାପନ)

ତ୍ + ପ = ତ୍ପ .... ଉତ୍ପଳ, ଉତ୍ପାତ, ଉତ୍ପନ୍ନ

ତ୍ + ସ = ତ୍ସ .... ବତ୍ସ, ବତ୍ସର, ସଂବତ୍ସର



ସ୍ + ଥ = ସ୍ଥ .... ସ୍ଥାନ, ସ୍ଥିର, ସ୍ଥିତ, ସ୍ଥାବର, ଅସ୍ଥି, ସ୍ଥଳ

ସ୍ + ଖ = ସ୍ଖ .... ସ୍ଖଳନ, ଭୂସ୍ଖଳନ

ଗ୍ + ଗ = ଗ୍ଗ / ଗ୍‌ଗ .... ଗୁଗ୍ଗୁଳ (ଗୁଗ୍‌ଗୁଳ)

ଡ୍ + ଗ = ଡ୍ଗ / ଡ୍‌ଗ .... ଖଡ୍ଗ (ଖଡ୍‌ଗ)

ଦ୍ + ଗ = ଦ୍ଗ/ଦ୍‌ଗ... ମୁଦ୍ଗର, ଉଦ୍ଗାର (ମୁଦ୍‌ଗର, ଉଦ୍‌ଗାର)

ଲ୍ + ଗ = ଲ୍ଗ/ଲ୍‌ଗ.... ଫଲ୍ଗୁ, ଫାଲ୍ଗୁନ (ଫଲ୍‌ଗୁ, ଫାଲ୍‌ଗୁନ)

ଦ୍ + ଘ = ଦ୍ଘ / ଦ୍‌ଘ .... ଉଦ୍ଘାଟନ (ଉଦ୍‌ଘାଟନ)

ଚ୍ + ଚ = ଚ୍ଚ ..... ଉଚ୍ଚ, ଉଚ୍ଚାରଣ, ଉଚ୍ଚୈଃ

ଶ୍ + ଚ = ଶ୍ଚ .... ନିଶ୍ଚୟ, ପଶ୍ଚିମ, ପଶ୍ଚାତ୍

ଚ୍ + ଛ = ଚ୍ଛ ..... ଗୁଚ୍ଛ, ତୁଚ୍ଛ, ଆଚ୍ଛାଦନ, ବିଚ୍ଛେଦ, ସ୍ୱଚ୍ଛ, କଚ୍ଛପ

ଶ୍ + ଛ = ଶ୍ଛ / ଶ୍‌ଛ .... ଶିରଶ୍ଛେଦ, ଦୁଶ୍ଛେଦ୍ୟ (ଶିରଶ୍‌ଛେଦ, ଦୁଶ୍‌ଛେଦ୍ୟ)

ଜ୍ + ଝ = ଜ୍ଝ/ଜ୍‌ଝ .... କୁଜ୍ଝଟୀ, କୁଜ୍ଝଟିକା (କୁଜ୍‌ଝଟୀ, କୁଜ୍‌ଝଟିକା)

ଚ୍ + ଞ = ଚ୍ଞ .... ଯାଚ୍ଞା

ଜ୍ + ଞ = ଜ୍ଞ ..... ବିଜ୍ଞ, ଆଜ୍ଞା, ଯଜ୍ଞ, ଜ୍ଞାନ



ଜ୍ଞାନୀ ସଜ୍ଜନ ସଙ୍ଗ ଧରି, ମନ ନିର୍ମଳ ସ୍ୱଚ୍ଛ କରି,
ପ୍ରଭୁଙ୍କ ନାମ ଉଚ୍ଚାରଣ, କର ହେ ନରନାରୀଗଣ।

ଟ୍ + ଟ = ଟ୍ଟ .... ଅଟ୍ଟହାସ, ଅଟ୍ଟାଳିକା

ଷ୍ + ଟ = ଷ୍ଟ .... ଅଷ୍ଟ, କଷ୍ଟ, ଦୁଷ୍ଟ, ପୁଷ୍ଟ, ହୃଷ୍ଟ, ରୁଷ୍ଟ, ସମଷ୍ଟି

ଷ୍ + ଠ = ଷ୍ଠ .... ଷଷ୍ଠ, କନିଷ୍ଠ, ବଳିଷ୍ଠ, ଶ୍ରେଷ୍ଠ, ଗରିଷ୍ଠ, ନିଷ୍ଠୁର

ଡ୍ + ଡ = ଡ୍ଡ / ଡ୍‌ଡ .... ଉଡ୍ଡୀୟମାନ (ଉଡ୍‌ଡୀୟମାନ)

ବିବିଧ ରଙ୍ଗର ପତାକାମାନ, ଅଟ୍ଟାଳିକା ଶିରେ ଉଡ୍ଡୀୟମାନ।
ଖଡ୍‌ଗ ଅବା ଖଣ୍ଡା ଧରି ଚାଲେ ଖଣ୍ଡାଇତ,
ଖଡ୍‌ଗ ଯୋଗୁଁ ଖଡ୍‌ଗୀ ବୋଲି ଗଣ୍ଡାର ବିଦିତ।

ଗ୍ + ଦ = ଗ୍ଦ / ଗ୍‌ଦ ... ବାଗ୍ଦାନ, ବାଗ୍ଦେବୀ (ବାଗ୍‌ଦାନ, ବାଗ୍‌ଦେବୀ)
ଦ୍ + ଦ = ଦ୍ଦ .... ଉଦ୍ଦୀପନା, ଉଦ୍ଦେଶ୍ୟ
ବ୍ + ଦ = ବ୍ଦ .... ଶବ୍ଦ, ଅବ୍ଦ

ଗ୍ + ଧ = ଗ୍ଧ / ଗ୍‌ଧ .... ଦୁଗ୍ଧ, ମୁଗ୍ଧ, ସ୍ନିଗ୍ଧ (ଦୁଗ୍‌ଧ, ମୁଗ୍‌ଧ, ସ୍ନିଗ୍‌ଧ)
ଦ୍ + ଧ = ଦ୍ଧ .... ଯୁଦ୍ଧ, *ଶୁଦ୍ଧ, ବୁଦ୍ଧି, ସିଦ୍ଧି, ଉଦ୍ଧାର
ବ୍ + ଧ = ବ୍ଧ / ବ୍‌ଧ .... ଲୁବ୍ଧ, କ୍ଷୁବ୍ଧ, ଆରବ୍ଧ (ଲୁବ୍‌ଧ, କ୍ଷୁବ୍‌ଧ, ଆରବ୍‌ଧ)

କୁକ୍କୁଟ ମୁଣ୍ଡେ ଅଛି ଚୂଳ, ମାଟି ଭିତରେ ବୃକ୍ଷମୂଳ।
ସାଧୁର ଲକ୍ଷଣ ଈଶ୍ୱରଭକ୍ତି, ଦୁଗ୍ଧ ପାନ କଲେ ବଢ଼ଇ ଶକ୍ତି।
ଅବ୍ଜ ଫୁଟିଛି ସରୋବରେ, ବେଢ଼ି ଅଛନ୍ତି ମଧୁକରେ।
କହିବନାହିଁ ଗୁପ୍ତ କଥା, ନ ଦିଅ ଲୋକ ମନେ ବ୍ୟଥା।
ପଡ଼ନ୍ତେ କର୍ଣ୍ଣେ ସେହି ଶବ୍ଦ, ଆନନ୍ଦ ପ୍ରାଣେ ହେଲା ଲବ୍ଧ।



ପ୍ + ପ = ପ୍ପ / ପ୍‌ପ .... ପିପ୍ପଳୀ (ପିପ୍‌ପଳୀ)
ଲ୍ + ପ = ଲ୍ପ .... ଅଳ୍ପ, ଗଳ୍ପ, କଳ୍ପନା, ସଂକଳ୍ପ, ଜଳ୍ପନା
ଷ୍ + ପ = ଷ୍ପ .... ପୁଷ୍ପ, ନିଷ୍ପାପ, ନିଷ୍ପୀଡ଼ନ
ସ୍ + ପ = ସ୍ପ .... ପରସ୍ପର, ସ୍ପର୍ଶ, ଆସ୍ପଦ

ଲ୍ + ଫ = ଲ୍ଫ / ଲ୍‌ଫ .... ଗୁଲ୍ଫ (ଗୁଲ୍‌ଫ)
ଷ୍ + ଫ = ଷ୍ଫ .... ନିଷ୍ଫଳ, ନିଷ୍ଫେନ
ସ୍ + ଫ = ସ୍ଫ .... ସ୍ଫଟିକ, ସ୍ଫୀତ, ଆସ୍ଫାଳନ

ଫାଲ୍‌ଗୁନ ମାସରେ ଦୋଳଯାତ୍ରା। କେହି କେହି ବଲ୍କ ପିନ୍ଧନ୍ତି। ପଶ୍ଚିମ ଦିଗରେ ଅଳ୍ପ ମେଘ ଉଠିଅଛି। ଶୁଷ୍କ କାଷ୍ଠ ଜାଳିବାକୁ ଭଲ। ଗୁରୁଜନମାନଙ୍କୁ ନମସ୍କାର କର। କେତେକ ବୃକ୍ଷ ପୁଷ୍ପବନ୍ତ, କିଂତୁ ନିଷ୍ଫଳ। ଜଳ ଗରମ କଲେ ସେଥିରୁ ବାଷ୍ପ ବାହାରେ। ସ୍ଫଟିକ ସ୍ୱଚ୍ଛ ଅଟେ। ତାଙ୍କ ମୁଖ ନିସ୍ତେଜ ଦିଶୁଅଛି। ଦୟାଳୁ ଲୋକ ଦୁଃଖୀମାନଙ୍କର କଷ୍ଟ ହରଣ କରନ୍ତି।

ଦ୍ + ବ = ଦ୍ବ / ଦ୍‌ବ .... ଉଦ୍ବାହ, ବୁଦ୍ବୁଦ (ଉଦ୍‌ବାହ, ବୁଦ୍‌ବୁଦ)

ବ୍ + ବ = ବ୍ବ / ବ୍‌ବ .... ତିବ୍ବତ (ତିବ୍‌ବତ)

ଦ୍ + ଭ = ଦ୍ଭ / ଦ୍‌ଭ .... ଉଦ୍ଭିଦ, ଅଦ୍ଭୁତ, ସଦ୍ଭାବ, ଉଦ୍ଭବ (ଉଦ୍‌ଭିଦ, ଅଦ୍‌ଭୁତ, ସଦ୍‌ଭାବ, ଉଦ୍‌ଭବ)

ଲ୍ + ଭ = ଲ୍ଭ / ଲ୍‌ଭ.... ପ୍ରଗଲ୍ଭ (ପ୍ରଗଲ୍‌ଭ)

ଦ୍ + ଯ = ଦ୍ୟ / ଦ୍‌ଯ .... ଉଦ୍ୟୋଗ (ଉଦ୍‌ଯୋଗ)

କ୍ + ଷ = କ୍ଷ .... ପକ୍ଷ, ଲକ୍ଷ, ଲକ୍ଷଣ, ରକ୍ଷା, ଦକ୍ଷିଣ, ପରୀକ୍ଷା, କ୍ଷେତ୍ର

ପ୍ + ସ = ପ୍ସ / ପ୍‌ସ .... ଅପ୍ସରା (ଅପ୍‌ସରା)

ଙ୍ + କ୍ଷ = ଙ୍କ୍ଷ / ଂକ୍ଷ .... ଆକାଙ୍କ୍ଷା (ଆକାଂକ୍ଷା)



ଉତ୍ତର ଦିଗେ ବୃକ୍ଷ ଡାଳେ, ପେଚା ରାବିଲା ରାତ୍ରି କାଳେ।
ଆମ୍ଭ ଜନ୍ମଭୂମି ଉତ୍କଳ ଦେଶ, ଉତ୍କଳ କୀରତି ଅଟେ ଅଶେଷ।
ସର୍ବ ଉତ୍ପାତୁଁ ତୋତେ ହରି, ରଖନ୍ତୁ ବସ କୃପା କରି।
ଅନନ୍ତ ଅଦ୍‌ଭୁତ ମହିମା, କେ କହିପାରେ ତାର ସୀମା।
ଉଦ୍‌ଯୋଗ କଲେ ସର୍ବସିଦ୍ଧି, ତପସ୍ୟା କଲେ ଚିତ୍ତ ଶୁଦ୍ଧି।

କ୍ + ତ୍ + ର = କ୍ତ୍ର ... ବକ୍ତ୍ର ........................ କ୍ତ୍ + ର = କ୍ତ୍ର

କ୍ + ଷ୍ + ଣ = କ୍ଷ୍ଣ/ କ୍ଷ୍‌ଣ ... ତୀକ୍ଷ୍ଣ (ତୀକ୍ଷ୍‌ଣ)......... କ୍ଷ୍ + ଣ = କ୍ଷ୍ଣ / କ୍ଷ୍‌ଣ

କ୍ + ଷ୍ + ମ = କ୍ଷ୍ମ ... ସୂକ୍ଷ୍ମ, ଲକ୍ଷ୍ମୀ, ଯକ୍ଷ୍ମା ...... କ୍ଷ୍ + ମ = କ୍ଷ୍ମ

କ୍ + ଷ୍ + ୟ = କ୍ଷ୍ୟ ... ଲକ୍ଷ୍ୟ, ସାକ୍ଷ୍ୟ, ଭକ୍ଷ୍ୟ ... କ୍ଷ୍ + ୟ = କ୍ଷ୍ୟ

ଙ୍ + କ୍ + ତ = ଙ୍‌କ୍ତ ... ପଙ୍‌କ୍ତି (ପଂକ୍ତି)......... ଙ୍ + କ୍ତ = ଙ୍‌କ୍ତ

ଙ୍ + କ୍ + ଷ = ଙ୍କ୍ଷ ... ଆକାଙ୍କ୍ଷା (ଆକାଂକ୍ଷା).... ଙ୍ + କ୍ଷ = ଙ୍କ୍ଷ



ଜ୍ + ଜ୍ + ୱ = ଜ୍ଜ୍ୱ ... ଉଜ୍ଜ୍ୱଳ ..................... ଜ୍ଜ୍ + ୱ = ଜ୍ଜ୍ୱ

ଣ୍ + ଡ୍ + ର = ଣ୍ଡ୍ର ... ପୁଣ୍ଡ୍ର (ପୁଂଡ୍ର) ........... ଣ୍ଡ୍ + ର = ଣ୍ଡ୍ର

ତ୍ + ତ୍ + ୱ = ତ୍ତ୍ୱ ... ତତ୍ତ୍ୱ, ମହତ୍ତ୍ୱ, ସତ୍ତ୍ୱ ..... ତ୍ତ୍ + ୱ = ତ୍ତ୍ୱ

ତ୍ + ତ୍ + ର = ତ୍ତ୍ର ... ପୁତ୍ତ୍ର (ପୁତ୍ର) ............ ତ୍ତ୍ + ର = ତ୍ତ୍ର

ତ୍ + ମ୍ + ୟ = ତ୍ମ୍ୟ ... ମାହାତ୍ମ୍ୟ, ଦୌରାତ୍ମ୍ୟ.... ତ୍ମ୍ + ୟ = ତ୍ମ୍ୟ

ତ୍ + ସ୍ + ନ = ତ୍ସ୍ନ ... ଜ୍ୟୋତ୍ସ୍ନା .................. ତ୍ସ୍ + ନ = ତ୍ସ୍ନ

ତ୍ + ସ୍ + ୟ = ତ୍ସ୍ୟ ... ମତ୍ସ୍ୟ ...................... ତ୍ସ୍ + ୟ = ତ୍ସ୍ୟ

ନ୍ + ତ୍ + ୟ = ନ୍ତ୍ୟ ... ଅନ୍ତ୍ୟ (ଅଂତ୍ୟ) ......... ନ୍ତ୍ + ୟ = ନ୍ତ୍ୟ

ନ୍ + ତ୍ + ର = ନ୍ତ୍ର ... ତନ୍ତ୍ର, ମନ୍ତ୍ର, ଯନ୍ତ୍ର, ମନ୍ତ୍ରୀ.......... ନ୍ତ + ର = ନ୍ତ୍ର

(ତଂତ୍ର, ମଂତ୍ର, ଯଂତ୍ର, ମଂତ୍ରୀ)



ନ୍ + ତ୍ + ୱ = ନ୍ତ୍ୱ ... ସାନ୍ତ୍ୱନା (ସାଂତ୍ୱନା) ............ ନ୍ତ + ୱ = ନ୍ତ୍ୱ

ନ୍ + ଦ୍ + ର = ନ୍ଦ୍ର ... ଇନ୍ଦ୍ର, ଇନ୍ଦ୍ରିୟ, ଚନ୍ଦ୍ର ............ ନ୍ଦ + ର = ନ୍ଦ୍ର

(ଇଂଦ୍ର, ଇଂଦ୍ରିୟ, ଚଂଦ୍ର)

ନ୍ + ଦ୍ + ୱ = ନ୍ଦ୍ୱ ... ଦ୍ୱନ୍ଦ୍ୱ (ଦ୍ୱଂଦ୍ୱ) .................. ନ୍ଦ + ୱ = ନ୍ଦ୍ୱ

ନ୍ + ଧ୍ + ର = ନ୍ଧ୍ର ... ରନ୍ଧ୍ର (ରଂଧ୍ର) .................. ନ୍ଧ + ର = ନ୍ଧ୍ର

ନ୍ + ଧ୍ + ଯ = ନ୍ଧ୍ୟ ... ବିନ୍ଧ୍ୟ, ସନ୍ଧ୍ୟା, ବନ୍ଧ୍ୟା .......... ନ୍ଧ + ଯ = ନ୍ଧ୍ୟ



(ବିଂଧ୍ୟ, ସଂଧ୍ୟା, ବଂଧ୍ୟା)

ନ୍ + ନ୍ + ଯ = ନ୍ନ୍ୟ ... ସନ୍ନ୍ୟାସ, ସନ୍ନ୍ୟାସୀ .............. ନ୍ନ + ଯ = ନ୍ନ୍ୟ

ମ୍ + ପ୍ + ର = ମ୍ପ୍ର ... ସମ୍ପ୍ରତି, ସମ୍ପ୍ରଦାୟ, ସମ୍ପ୍ରଦାନ .... ମ୍ପ + ର = ମ୍ପ୍ର

(ସଂପ୍ରତି, ସଂପ୍ରଦାୟ, ସଂପ୍ରଦାନ)

ମ୍ + ଭ୍ + ର = ମ୍ଭ୍ର ... ସମ୍ଭ୍ରମ, ସମ୍ଭ୍ରାନ୍ତ (ସଂଭ୍ରମ, ସଂଭ୍ରାଂତ) .. ମ୍ଭ + ର = ମ୍ଭ୍ର

ଷ୍ + କ୍ + ର = ଷ୍କ୍ର ... ନିଷ୍କ୍ରିୟ ......................... ଷ୍କ + ର = ଷ୍କ୍ର

ଷ୍ + ଟ୍ + ର = ଷ୍ଟ୍ର ... ଉଷ୍ଟ୍ର, ରାଷ୍ଟ୍ର ..................... ଷ୍ଟ + ର = ଷ୍ଟ୍ର



ଷ୍ + ପ୍ + ର = ଷ୍ପ୍ର ... ଦୁଷ୍ପ୍ରାପ୍ୟ, ନିଷ୍ପ୍ରୟୋଜନ ......... ଷ୍ପ + ର = ଷ୍ପ୍ର

ସ୍ + ତ୍ + ର = ସ୍ତ୍ର ... ଅସ୍ତ୍ର, ଶସ୍ତ୍ର, ଶାସ୍ତ୍ର, ବସ୍ତ୍ର ........ ସ୍ତ + ର = ସ୍ତ୍ର

ସ୍ + ଥ୍ + ଯ = ସ୍ଥ୍ୟ ... ସ୍ୱାସ୍ଥ୍ୟ, ଗାର୍ହସ୍ଥ୍ୟ ................. ସ୍ଥ + ଯ = ସ୍ଥ୍ୟ

ର୍ + ଚ୍ + ଚ = ର୍ଚ୍ଚ ... ଅର୍ଚ୍ଚନା, ଚର୍ଚ୍ଚା (ଅର୍ଚନା, ଚର୍ଚା) ........ ର୍ + ଚ୍ଚ = ର୍ଚ୍ଚ

ର୍ + ଚ୍ + ଛ = ର୍ଚ୍ଛ ... ମୂର୍ଚ୍ଛା, ମୂର୍ଚ୍ଛନା (ମୂର୍ଛା, ମୂର୍ଛନା)......... ର୍ + ଚ୍ଛ = ର୍ଚ୍ଛ

ର୍ + ଣ୍ + ଣ = ର୍ଣ୍ଣ ... ପୂର୍ଣ୍ଣ, ସ୍ୱର୍ଣ୍ଣ, ଚୂର୍ଣ୍ଣ (ପୂର୍ଣ, ସ୍ୱର୍ଣ, ଚୂର୍ଣ) . ର୍ + ଣ୍ଣ = ର୍ଣ୍ଣ

ର୍ + ତ୍ + ତ = ର୍ତ୍ତ ... କୀର୍ତ୍ତନ, କୀର୍ତ୍ତି, ମୂର୍ତ୍ତି .................. ର୍ + ତ୍ତ = ର୍ତ୍ତ

(କୀର୍ତନ, କୀର୍ତି, ମୂର୍ତି)

ର୍ + ଦ୍ + ଦ = ର୍ଦ୍ଦ ... ଗର୍ଦ୍ଦଭ (ଗର୍ଦଭ) ........................ ର୍ + ଦ୍ଦ = ର୍ଦ୍ଦ

ର୍ + ଦ୍ + ଧ = ର୍ଦ୍ଧ ... ଅର୍ଦ୍ଧ, ନିର୍ଦ୍ଧାରିତ, ବର୍ଦ୍ଧନ ............... ର୍ + ଦ୍ଧ = ର୍ଦ୍ଧ

(ଅର୍ଧ, ନିର୍ଧାରିତ, ବର୍ଧନ)

ର୍ + ତ୍ + ସ = ର୍ତ୍ସ ... ଭର୍ତ୍ସନା ................................. ର୍ + ତ୍ସ = ର୍ତ୍ସ

ର୍ + ଦ୍ + ର = ର୍ଦ୍ର ... ଆର୍ଦ୍ର...................................... ର୍ + ଦ୍ର = ର୍ଦ୍ର

ର୍ + ଯ୍ + ଯ = ର୍ଯ୍ୟ ... କାର୍ଯ୍ୟ, ଧୈର୍ଯ୍ୟ, ସୂର୍ଯ୍ୟ .................. ର୍ + ଯ୍ୟ = ର୍ଯ୍ୟ
(କାର୍ଯ, ଧୈର୍ଯ, ସୂର୍ଯ)

ର୍ + ଶ୍ + ୱ = ର୍ଶ୍ୱ ... ପାର୍ଶ୍ୱ, ପାରିପାର୍ଶ୍ୱିକ .................. ର୍ + ଶ୍ୱ = ର୍ଶ୍ୱ

ନ୍ + ତ୍ + ର୍ + ଯ = ନ୍ତ୍ର୍ୟ ... ସ୍ୱାତନ୍ତ୍ର୍ୟ, ପାରତନ୍ତ୍ର୍ୟ .................. ନ୍ତ୍ର୍ + ଯ = ନ୍ତ୍ର୍ୟ
(ସ୍ୱାତଂତ୍ର୍ୟ, ପାରତଂତ୍ର୍ୟ)

ର୍ + ତ୍ + ତ୍ + ଯ = ର୍ତ୍ତ୍ୟ ... ମର୍ତ୍ତ୍ୟ (ମର୍ତ୍ୟ) .................. ର୍ + ତ୍ତ୍ୟ = ର୍ତ୍ତ୍ୟ

ର୍ + ତ୍ + ତ୍ + ର = ର୍ତ୍ତ୍ର ... କର୍ତ୍ତ୍ରୀ (କର୍ତ୍ରୀ) .................. ର୍ + ତ୍ତ୍ର = ର୍ତ୍ତ୍ର

ର୍ + ଦ୍ + ଧ୍ + ୱ = ର୍ଦ୍ଧ୍ୱ ... ଊର୍ଦ୍ଧ୍ୱ (ଊର୍ଧ୍ୱ) .................. ର୍ + ଦ୍ଧ୍ୱ = ର୍ଦ୍ଧ୍ୱ

## ବିବିଧ ପାଠ



ବୁଢ଼ିଆଣୀ ଜାଲ ବଡ଼ ସୂକ୍ଷ୍ମ । ମୂଷିକର ଦନ୍ତ ତୀକ୍ଷ୍ଣ । ଉଦ୍‌ଯୋଗୀ ପୁରୁଷକୁ ଲକ୍ଷ୍ମୀ ମିଳେ । ସେ ତୁମ୍ଭର ଶୁଭାକାଂକ୍ଷୀ ଅଟନ୍ତି । ଶରତ୍ କାଳରେ ଚନ୍ଦ୍ର ଅତିଶୟ ଉଜ୍ଜ୍ୱଳ ଦିଶେ । ତାହାଙ୍କର ମହତ୍ତ୍ୱ ବିଷୟ ଚିନ୍ତା କର । ଶୋକାର୍ତ୍ତ ଲୋକକୁ ସାନ୍ତ୍ୱନା ଦିଅ । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା, ତ୍ୱକ୍ ବା ଚର୍ମ ଏହି ପାଞ୍ଚ ଇନ୍ଦ୍ରିୟ । ସନ୍ଧ୍ୟା ସମୟରେ ସନ୍ନ୍ୟାସୀ ଧ୍ୟାନ କରନ୍ତି । ପିତା କନ୍ୟା ସମ୍ପ୍ରଦାନ କଲେ । ସଂସ୍କୃତ ଶାସ୍ତ୍ରର ଚର୍ଚ୍ଚା କର । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଆର୍ଦ୍ର ବସ୍ତ୍ର ପିନ୍ଧିବନାହିଁ । ତାଙ୍କ ପରି ସଜ୍ଜନ ଦୁର୍ଲ୍ଲଭ । ଦକ୍ଷିଣ ପାର୍ଶ୍ୱରେ ପୀଡ଼ା ହୋଇଅଛି । ସର୍ବସୁଖର ମୂଳ ସ୍ୱାସ୍ଥ୍ୟ । ଅର୍ଦ୍ଧରାତ୍ର ସମୟରେ ମୁଁ ଊର୍ଦ୍ଧ୍ୱକୁ ଅନାଇ ନକ୍ଷତ୍ରପୂର୍ଣ୍ଣ ଆକାଶକୁ ଦେଖିଲି । ସମୟକୁ ନିଷ୍ପ୍ରୟୋଜନ କାର୍ଯ୍ୟରେ ନଷ୍ଟ କରିବନାହିଁ ।

ମସ୍ତକ ଦେହର ଉତ୍ତମ ଅଙ୍ଗ । ପ୍ରତି ହସ୍ତରେ ପାଞ୍ଚ ଅଙ୍ଗୁଳି । ପ୍ରତି ପାଦରେ ପାଞ୍ଚ ଅଙ୍ଗୁଳି । ମନୁଷ୍ୟର ଦୁଇଟି ବାହୁ, ଦୁଇଟି ହସ୍ତ, ଦୁଇଟି ପାଦ, ଦୁଇଟି ଚକ୍ଷୁ, ଦୁଇଟି କର୍ଣ୍ଣ, ଦୁଇଟି ଓଷ୍ଠ । ନାସିକାରେ ଦୁଇଟି ରନ୍ଧ୍ର ଅଛି । ଉଦରରେ ପାକଯନ୍ତ୍ର ଅଛି । ମସ୍ତକରୁ ପାଦ ପର୍ଯ୍ୟନ୍ତ ସମସ୍ତ ଦେହରେ ରକ୍ତ ପ୍ରବାହିତ ହେଉଅଛି ।

କିଏ ତୁମ୍ଭଙ୍କୁ ଏବଂ ଆଉ ସବୁ ଜୀବମାନଙ୍କୁ କରିଅଛନ୍ତି ? କିଏ ତୁମ୍ଭଙ୍କୁ ଦେଖିବା ପାଇଁ ଚକ୍ଷୁ, ଶୁଣିବା ପାଇଁ କର୍ଣ୍ଣ, ଶୁଙ୍ଘିବା ପାଇଁ ନାସିକା, ସ୍ୱାଦ ବାରିବା ପାଇଁ ଜିହ୍ୱା, କଥା କହିବା ପାଇଁ ମୁଖ, ପଦାର୍ଥମାନ ଧରିବା ପାଇଁ ହସ୍ତ, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ପାଦ ଦେଇଅଛନ୍ତି ? କିଏ ତୁମ୍ଭଙ୍କୁ ଭଲ, ମନ୍ଦ, ନ୍ୟାୟ, ଅନ୍ୟାୟ ବିଚାର କରିବା ପାଇଁ ବୁଦ୍ଧି ଦେଇଅଛନ୍ତି ? ପରମେଶ୍ୱର ତୁମ୍ଭଙ୍କୁ ସୃଷ୍ଟି କରିଅଛନ୍ତି, ତୁମ୍ଭଙ୍କୁ ସର୍ବଦା ରକ୍ଷା କରୁଅଛନ୍ତି । ଆହା, ତାଙ୍କର ଦୟା କିଏ ବର୍ଣ୍ଣି ପାରିବ ?

ସୂର୍ଯ୍ୟ ଆମ୍ଭମାନଙ୍କୁ ଆଲୁଅ ଓ ଉତ୍ତାପ ଦେଉଅଛି । ସୂର୍ଯ୍ୟ ନ ଥିଲେ ସଂସାର ଅନ୍ଧକାରମୟ ଓ ଅତି ଶୀତଳ ରହିଥାନ୍ତା । ପୃଥିବୀରେ ଜୀବଜନ୍ତୁ ବୃକ୍ଷଲତା କିଛି ଜନ୍ମି ପାରନ୍ତାନାହିଁ । ସୂର୍ଯ୍ୟ ପୃଥିବୀଠାରୁ ଅତି ବୃହତ୍ । ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବର୍ଷକେ ଥରେ ବୁଲେ ।

ରାତ୍ରି କାଳରେ ଚନ୍ଦ୍ର ଉଜ୍ଜ୍ୱଳ ଦେଖାଯାଏ। ଚନ୍ଦ୍ର କ୍ରମେ କ୍ରମେ ବଢ଼ୁଥାଏ। ଯେଉଁ ଦିନ ତାହା ସମ୍ପୂର୍ଣ୍ଣ ଗୋଲ ହୁଏ ବା ପୂର୍ଣ୍ଣଚନ୍ଦ୍ର ହୁଏ, ସେଦିନ ପୂର୍ଣ୍ଣିମା। ଯେଉଁ ଦିନ ଚନ୍ଦ୍ର ଏକାବେଳକେ ଦେଖାଯାଏ ନାହିଁ, ତାହାକୁ ଅମାବାସ୍ୟା କହନ୍ତି। ଚନ୍ଦ୍ରର ନିଜର ଆଲୁଅ ନାହିଁ। ଯେଉଁ ଆଲୁଅକୁ ଜ୍ୟୋତ୍ସ୍ନା ବୋଲାଯାଏ, ତାହା ଚନ୍ଦ୍ର ସୂର୍ଯ୍ୟଠାରୁ ପାଏ। ଚନ୍ଦ୍ର ପୃଥିବୀ ଅପେକ୍ଷା କ୍ଷୁଦ୍ର। ଚନ୍ଦ୍ର ପୃଥିବୀର ଚାରିକଡ଼ରେ ମାସକେ ଥରେ ବୁଲେ।

ସୂର୍ଯ୍ୟ ଯେଉଁ ଦିଗରେ ଉଏଁ, ତୁମ୍ଭେ ସେହି ଦିଗକୁ ଅନାଇଅଛ। ସେହି ଦିଗ ପୂର୍ବଦିଗ। ତୁମ୍ଭର ଦକ୍ଷିଣହସ୍ତ ଦକ୍ଷିଣ ଦିଗକୁ ଅଛି, ବାମହସ୍ତ ଉତ୍ତର ଦିଗକୁ ଅଛି, ତୁମ୍ଭର ପଛଆଡ଼େ ପଶ୍ଚିମ ଦିଗ।

ତୁମ୍ଭେ ପଶ୍ଚିମ ଦିଗକୁ ଅନାଇ ଠିଆ ହେଲେ, ତୁମ୍ଭର ଦକ୍ଷିଣ ହସ୍ତ କେଉଁ ଦିଗକୁ ହେବ? ତୁମ୍ଭେ ଦକ୍ଷିଣ ଦିଗକୁ ଅନାଇ ଠିଆ ହେଲେ, ତୁମ୍ଭର ବାମ ହସ୍ତ କେଉଁ ଦିଗକୁ ହେବ? ତୁମ୍ଭେ ଉତ୍ତର ଆଡ଼କୁ ଅନାଇ ଠିଆ ହେଲେ, ତୁମ୍ଭର ପିଠି କେଉଁ ଦିଗକୁ ରହିବ?








ଦିନରାତି ମିଶି ଦିବସ ଏକ, ସାତ ଦିବସରେ ସପ୍ତାହ ଲେଖ।
ସପ୍ତାହରେ ସାତ ବାରର ନାମ, ମନେ ସଦା ରଖିଥିବା ହେ ରାମ।
ରବି ପରେ ସୋମ, ତାପରେ ମଙ୍ଗଳ, ତାପରେ ଯେ ବୁଧବାର।
ଗୁରୁ, ଶୁକ୍ର, ଶନି ଆସେ ତାହାପରେ, ସାତ ବାର ଏ ପ୍ରକାର॥

ପନ୍ଦର ଦିନକୁ ଏକ ପକ୍ଷ ବୋଲି, ଦୁଇ ପକ୍ଷ ଏକ ମାସ।
ଦୁଇ ମାସ ମିଳି ଏକ ଋତୁ ହୁଏ, ମନେ ରଖ ପୀତବାସ।
ଶୁକ୍ଳ ପକ୍ଷେ ଚନ୍ଦ୍ର ପ୍ରତି ଦିବସରେ ବଢ଼ଇ ପୂର୍ଣ୍ଣିମା ଯାଏ।
କୃଷ୍ଣପକ୍ଷେ ପୁଣି ଅମାବାସ୍ୟା ଯାଏ, ଅଳ୍ପେ, ଅଳ୍ପେ ଛିଡ଼ୁଥାଏ॥

ଦ୍ୱାଦଶ ମାସରେ ଛଅ ଋତୁ ହୁଏ, କେ କହିପାରିବ କହ।
ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶିଶିର, ବସନ୍ତ ଋତୁ ଏ ଛଅ।

ଗ୍ରୀଷ୍ମେ, ବୈଶାଖ, ଜ୍ୟେଷ୍ଠ ମାସ, ପ୍ରଚଣ୍ଡ ରୌଦ୍ର ପରକାଶ।
ବର୍ଷାରେ ଆଷାଢ଼, ଶ୍ରାବଣ, ମେଘ ବରଷେ ଘନ ଘନ।
ଭାଦ୍ର, ଆଶ୍ୱିନ, ଶରତରେ, ନିର୍ମଳ ଶୋଭା ଜଗତରେ।
ହିମେ କାର୍ତ୍ତିକ, ମାର୍ଗଶିର, ରାତିରେ ପଡ଼ଇ ଶିଶିର।
ଶୀତରେ ପୌଷ, ମାଘ ମାସ, ଦେହରେ ରଖ ଶୀତବାସ।
ଫାଲ୍‌ଗୁନ, ଚୈତ୍ର, ବସନ୍ତରେ, ମୃଦୁ ମଳୟ ମନ ହରେ।
ବାର ମାସର କଥା ଏହି, ହେଜ ବାଳକେ ମନ ଦେଇ।

ବୃକ୍ଷ ବୀଜରୁ ଜାତ ହୁଏ । ବଟ ବୃକ୍ଷର ବୀଜ କେଡ଼େ କ୍ଷୁଦ୍ର । ଦେଖ, କେଡ଼େ କ୍ଷୁଦ୍ର ବୀଜରୁ କେଡ଼େ ବଡ଼ ବୃକ୍ଷ ଜନ୍ମେ । ସଂସାରରେ କେତେ ପ୍ରକାର ବୃକ୍ଷ ଅଛି ? ବଟ, ଅଶ୍ୱତ୍ଥ, ନାରିକେଳ, ଆମ୍ବ, ତାଳ, ଶାଳ, ପିଆଶାଳ, ଅସନ ପ୍ରଭୃତି ଶତ ଶତ ପ୍ରକାରର ବଡ଼ ବୃକ୍ଷ ଅଛି । ମାଧବୀ, ମାଳତୀ, ନିଆଳୀ, ଅପରାଜିତା ପ୍ରଭୃତି ଲତାନ୍ତି; ଅର୍ଥାତ୍ ଲଟାଇ ଲଟାଇ ମାଡ଼ି ଯାଆନ୍ତି ବୋଲି ସେମାନଙ୍କୁ ଲତା ବୋଲାଯାଏ । ଶତ ଶତ ପ୍ରକାରର ଲତା ଅରଣ୍ୟରେ ଦେଖାଯାଏ । ମନୁଷ୍ୟମାନେ ନାନା ପ୍ରକାର ଚାଷ କରନ୍ତି; ଯଥା:-ଆଖୁ, ଧାନ, ମୁଗ, ହରଡ଼, ଗହମ, ବୁଟ, ବ୍ରୀହି, ଯବ ଇତ୍ୟାଦି ।



ଆମ୍ଭ ଗ୍ରାମର କୃଷକମାନେ ସେମାନଙ୍କର ଧାନଜମି ସବୁ ହଳ କରିସାରିଲେଣି । ଆଜି ଚାଷୀମାନେ ଧାନ ବୁଣିବେ । ଆସ ଦେଖିବାକୁ ଯିବା । ଯେଉଁ ଧାନ ବୁଣାଯାଏ, ତାହାକୁ ବିହନ ବୋଲନ୍ତି । ବିହନ ବୁଣିସାରି କୃଷକମାନେ ଜମି ଉପରେ ମଇ ଦେଇ ତାହାକୁ ଚିକ୍କଣ କରିଦିଅନ୍ତି । ବିହନ ବୃଷ୍ଟିଜଳ ଓ ରୌଦ୍ର ତାପ ପାଇ ପୁଷ୍ଟ ହୋଇ ଧାନଗଛ ହେବ । ଧାନ ଗଛରେ ଧାନ ଫଳିଲେ କୃଷକମାନେ ଆନନ୍ଦରେ ଧାନ ଅମଳ କରିବେ ।



ମତ୍ସ୍ୟମାନେ ଜଳରେ ବାସ କରନ୍ତି । ସେମାନଙ୍କୁ ଜଳରୁ କାଢ଼ି ଆଣିଲେ ସେମାନେ ଅଳ୍ପ କ୍ଷଣ ମଧ୍ୟରେ ମରିଯିବେ । ମତ୍ସ୍ୟମାନଙ୍କର ପାଦ ନାହିଁ । ସେମାନଙ୍କର ଲାଞ୍ଜ ଓ ଡେଣା ଥିବାରୁ ସେମାନେ ଲାଞ୍ଜ ଓ ଡେଣା ସାହାଯ୍ୟରେ ସନ୍ତରଣ କରନ୍ତି । ଅଧିକାଂଶ ମତ୍ସ୍ୟମାନଙ୍କ ଦେହରେ କାତି ଥାଏ । ମତ୍ସ୍ୟମାନେ ଅଣ୍ଡା ବା ଡିମ୍ବରୁ ଜାତ ।



ତୁମ୍ଭେ ମହୁମାଛିମାନଙ୍କର ମହୁବସା ଦେଖିଅଛ କି ? ମହୁବସା ଭିତରେ କ୍ଷୁଦ୍ର କ୍ଷୁଦ୍ର କେତେ କୋଠରି ଅଛି । ସବୁ କୋଠରିଗୁଡ଼ିକର ଆକାର ଓ ଆୟତନ ସମାନ । ମହୁମାଛିମାନେ ପୁଷ୍ପମାନଙ୍କରୁ ମଧୁ ଆଣି ସେହି କୋଠରିମାନଙ୍କରେ ମଧୁ ସଞ୍ଚୟ କରନ୍ତି । ଦେଖ, କିପରି କୌଶଳରେ ମଧୁଚକ୍ର ବା ମହୁବସା ନିର୍ମିତ ହୋଇଅଛି । ମଧୁ ମିଷ୍ଟ ଓ ହିତକାରୀ । ମହୁମାଛିମାନେ ଅତ୍ୟନ୍ତ ପରିଶ୍ରମୀ । ମଧୁମକ୍ଷିକା ପରି ପରିଶ୍ରମ କର । ମାଛିମାନଙ୍କର ଛଅଟୀ ଗୋଡ଼, ଦୁଇଟୀ ଡେଣା, ଅନେକଗୁଡ଼ାଏ ଚକ୍ଷୁ ଅଛି ।



ପକ୍ଷୀମାନେ କି ସୁନ୍ଦର ବସା ନିର୍ମାଣ କରନ୍ତି । କାଠି, କୁଟା, ଶୁଷ୍କପତ୍ର, ଲୋମ ପ୍ରଭୃତି ନେଇ ପକ୍ଷୀମାନେ ତାହାଦ୍ୱାରା ବସା ନିର୍ମାଣ କରନ୍ତି । ଏକ ଏକ ଜାତି ପକ୍ଷୀ ଏକ ଏକ ପ୍ରକାର ବସା ନିର୍ମାଣ କରନ୍ତି । ପକ୍ଷୀମାନେ ବସା ମଧ୍ୟରେ ଡିମ୍ବ ରଖି, ଡିମ୍ବଗୁଡ଼ିକ ବାରଂବାର ଉଷୁମାଇଲେ, ଡିମ୍ବ ମଧ୍ୟରୁ ପକ୍ଷୀଶାବକ ବାହାରନ୍ତି । ଶାବକମାନେ ଡିମ୍ବରୁ ବାହାରିଲା କ୍ଷଣି ଉଡ଼ିପାରନ୍ତିନାହିଁ । ସେମାନଙ୍କର ବାପା ମାଆ ସେମାନଙ୍କୁ ଅତି ଯତ୍ନରେ ଖୁଆଇ ରକ୍ଷା କରନ୍ତି । ଏହି ପ୍ରକାରେ କ୍ରମେ କ୍ରମେ ସବଳ ହୋଇ ଶାବକମାନେ ଆକାଶରେ ଉଡ଼ିବାକୁ ଶିଖନ୍ତି ।

## ସୁନ୍ଦର ସଂସାର



ଆକାଶ ଦିଶେ କି ସୁନ୍ଦର । ତାହାକୁ ରଚିଲେ ଈଶ୍ୱର ॥
ଉଜ୍ଜ୍ୱଳ ସୂର୍ଯ୍ୟ, ଚନ୍ଦ୍ର, ତାରା । ନୀଳ ସମୁଦ୍ର ଶ୍ୟାମ ଧରା ॥
ପର୍ବତ, ନଦୀ, ତରୁମାନ । ସୃଜିଲେ ପ୍ରଭୁ ଭଗବାନ ॥
ନାନା ବର୍ଣ୍ଣର ଫୁଲ ଫଳ । ବୃକ୍ଷର ପଲ୍ଲବ କୋମଳ ॥
ମନୁଷ୍ୟ, ପଶୁ, ପକ୍ଷୀ ଆଦି । ସକଳ ସୃଜିଲେ ଅନାଦି ॥
ତାଙ୍କର ଆଜ୍ଞାରେ ପବନ । ସର୍ବତ୍ର କରେ ବିଚରଣ ॥
ଅଗ୍ନି ତାଙ୍କର ଆଦେଶରେ । ଉତ୍ତାପ, ତେଜ ଦାନ କରେ ॥
ଈଶ୍ୱର ଦୟାର ସାଗର । ତାଙ୍କର ମହିମା ସୁମର ॥



## ପରମେଶ୍ୱର

ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ ।
ଜଗତର କର୍ତ୍ତା, ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପାଶେ ଅଛନ୍ତି ଦିବସ ରଜନୀ, ମହାପ୍ରଭୁ ପରାତ୍ପର ।
ଏ କଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।

## ସ୍ତବ



କି ସୁନ୍ଦର ଆହା, କି ଆନନ୍ଦମୟ, ଏହି ବିଶାଳ ସଂସାର ।
ଧନ୍ୟ ମହାପ୍ରଭୁ, ମହିମା ତୁମ୍ଭର, ଅଟେ ଅନନ୍ତ ଅପାର ॥
ସୂର୍ଯ୍ୟ, ଚନ୍ଦ୍ର, ତାରା, ତୁମ୍ଭର ଆଜ୍ଞାରେ, ବରଷନ୍ତି ଜ୍ୟୋତିଃରାଶି ।
ତୁମ୍ଭରି କୁସୁମ, ପ୍ରତି ପ୍ରଭାତରେ, ହସଇ ଆନନ୍ଦେ ଭାସି ॥
ପିତା ମାତା ବନ୍ଧୁ, ଭାଇ ଭଗିନୀର, ହୃଦୟେ ଦେଇଛ ପ୍ରୀତି ।
ତେଣୁ ମୁଁ ସଂସାରେ, ରହିଛିଁ ଆନନ୍ଦେ, ସୁଖ ଭୁଞ୍ଜି ନିତି ନିତି ॥
ଦିଅ ଭକ୍ତି ପ୍ରଭୁ, ହୃଦୟେ ମୋହର, ବିରାଜ ନିତ୍ୟ ତହିଁରେ ।
ସତ୍ୟପଥେ ରହି, ତୁମ୍ଭରି ଆଶ୍ରାରେ ଯାଉ ମୋ ଦିନ ମହୀରେ ॥

## ପ୍ରଭାତ

ପାହିଲା ଅନ୍ଧାର ରଜନୀ, ଉଠ ଉଠ ବାଳକେ ।
ନବୀନ ପ୍ରଭାତ ସମୟ, ଏବେ ଗାଅ ପୁଲକେ ॥
ଦଶଦିଗ ଦେଖ ଉଜ୍ଜ୍ୱଳ, ପାଇ ରବି କିରଣ ।
ଫୁଲ ଫୁଟିଅଛି କାନନେ, ଧୀରେ ବହେ ପବନ ॥
ଥିଲେ ଅଚେତନ ନିଦ୍ରାରେ, ସର୍ବେ ଧରଣୀବାସୀ ।
କି ମନ୍ତ୍ର ପଢ଼ିଲା ପ୍ରଭାତ, କେଉଁ ଦେଶରୁ ଆସି ॥
ନବପ୍ରାଣ ଲଭି କ୍ଷଣକେ, ଜାଗି ଉଠିଲେ ସର୍ବେ ।
ଆକାଶ ପୃଥିବୀ ପୂରିଲା, ମହା ଆନନ୍ଦ ରବେ ॥
ବିହଙ୍ଗେ ଗାଇଲେ ସଙ୍ଗୀତ, ଆହା କି ମନୋହର ।
ସେ ଗୀତ ଶ୍ରବଣେ ହୃଦୟ, ନାଚି ଉଠେ ମୋହର ॥
ବିହଙ୍ଗ ସଙ୍ଗତେ ବାଳକେ, ଗାଅ ଆନନ୍ଦ ମନେ ।
ହୃଦୟେ ସୁମରି ଜଗତ ପିତା ସୃଷ୍ଟି କାରଣେ ॥





## ସଂଧ୍ୟା

ପଶ୍ଚିମ ଦିଗରେ ବୁଡ଼ଇ ରବି ।
ଆହା କି ସୁନ୍ଦର ଲୋହିତ ଛବି ॥
ପଶ୍ଚିମ ଆକାଶ ସିନ୍ଦୂରମୟ ।
ଦେଖିଲେ ପ୍ରଫୁଲ୍ଲ ହୁଏ ହୃଦୟ ॥
କ୍ରମେ ଅନ୍ଧକାର ଆସଇ ଘୋଟି ।
ଉଇଁଲେଣି ତାରା ଗୋଟିକି ଗୋଟି ॥
ଚରା ସାରି ପକ୍ଷୀ ଆକାଶେ ଉଡ଼ି ।
ବସାକୁ ଆନନ୍ଦେ ଗଲେ ବାହୁଡ଼ି ॥
ହଳ କାମ ସାରି କୃଷକମାନେ ।
ଫେରି ଯାଉଛନ୍ତି ଦିନାବସାନେ ॥
ବାଳକେ ଆସିଲେ ପାଠଶାଳାରୁ ।
ହସ ହସ ମୁଖ ଦିଶେ ସୁଚାରୁ ॥
ଲଗାଇଲେ ସଞ୍ଜ ଦୀପ ଘରଣୀ ।
ଅନ୍ଧକାରେ ବୁଡ଼ିଗଲା ଧରଣୀ ॥

# ଅକ୍ଷର ଲିଖନ ସୋପାନ

(କ)



(ଖ)

ଠ ଚ ର ର ଗ ଶ ଟ ଖ ଝ

ବ କ ଵ

ଇ ଈ ଙ୍କ ଙ୍ଗ ଙ୍ଖ ଛ ଚ୍ଛ ଞ୍ଛ ଲ୍ଲ

ଧ

ଥ

ଅ ଆ ଲ ଳ

ପ ଫ ଷ

ଦ ହ ଢ

ଜ ଜ୍ଜ

ଘ ଙ୍ଘ ଦ ଦ୍ଧ ଭ

ନ

ମ ସ ମ୍ପ ମ୍ଫ ମ୍ବ ମ୍ଭ

ଯ ୟ କ୍ଷ ଦ ଦ୍ଧ

ତ ଡ ଡ଼

ଡ ଡ଼ ଢ ଉ ଊ

ଣ ଣ୍ଡ ଣ୍ଢ ନ୍ତ

ଣ୍ଠ ଷ୍ଠ

ଏ ଐ

ଓ ଔ ଓ୍ୱ ଉ

ଞ ଞ୍ଚ ଞ୍ଛ ଞ୍ଜ ଞ୍ଝ ଞ୍ଚ ଝ

| ଅକ୍ଷର + | | = ଭିନ୍ନ ଅକ୍ଷର |
|---|---|---|
| ଚ, ଡ, ଢ | + ଲାଞ୍ଜ | ... ର, ଉ, ଊ |
| ଚ | + ବାଡ଼ି | ... ଗ |
| ଚ, ଛ | + ଶିଙ୍ଘ | ... ଟ, ଛ |
| ପ, ଯ, ଦ, ବ | + ପେଟରେ ବଙ୍କା ବାଡ଼ି | ... ଷ, ଷ, ଢ, ଢ |
| ମ | + ତଳେ ବାଡ଼ି | ... ସ |
| ଦ | + ତଳେ ଆଙ୍କୁଡ଼ି | ... ହ |
| ଡ, ଢ | + ତଳେ ବିନ୍ଦୁ | ... ଡ଼, ଢ଼ |
| ପ, ଡ | + ଶୁଣ୍ଢ | ... ଫ, ଢ |




# ଓଡ଼ିଆ ଲିପିର ନକ୍ସା

ଏଠାରେ ବାମ ଆଡ଼େ ଯେଉଁ ନକ୍ସା ଅଛି, ତହିଁରୁ ଓଡ଼ିଆ ଲିପିର ସଂଯୋଜନ ପଦ୍ଧତି ଜଣାପଡ଼ିବ । ଓଡ଼ିଆ ଅକ୍ଷରର ଉପରେ, ତଳେ, ବାମ ଓ ଡାହାଣ ଆଡ଼େ ସୂଚକ ମାତ୍ରା, ଫଳା, କ୍ଷୁଦ୍ରାକ୍ଷର ରହିପାରେ । କେଉଁ ସ୍ଥାନରେ କେଉଁ ଚିହ୍ନ ରହିପାରେ, ତାହା ଏଠାରେ ଦେଖାଇ ଦିଆହୋଇଛି ।

**୧ ଚିହ୍ନିତ ସ୍ଥାନରେ ରହେ**

**ସ୍ୱରବର୍ଣ୍ଣ ୧୧ଟା ....**

ଅ ଆ ଇ ଈ ଉ ଊ ଋ
ଏ ଐ ଓ ଔ

**ବ୍ୟଞ୍ଜନ ବର୍ଣ୍ଣ ୩୯ଟା**

କ ଖ ଗ ଘ ଙ
ଚ ଛ ଜ ଝ ଞ
ଟ ଠ ଡ ଢ ଣ
ଡ଼ ଢ଼
ତ ଥ ଦ ଧ ନ
ପ ଫ ବ ଭ ମ
ଯ ୟ ର ଳ ଲ ୱ
ଶ ଷ ସ ହ (କ୍ଷ ଜ୍ଞ)

**ଯୁକ୍ତାକ୍ଷର ୧୨ଟା ......**

ଙ୍କ ଙ୍ଖ ଙ୍ଗ ଙ୍ଘ ଞ୍ଚ ଞ୍ଛ
ଞ୍ଜ ଞ୍ଝ ଣ୍ଟ ଣ୍ଠ ଣ୍ଡ ଣ୍ଢ

**ଯୁକ୍ତାକ୍ଷର ୯ଟା ....**

ଜ୍ଜ ଚ୍ଛ ଙ୍ଗ ଦ୍ଧ ଣ୍ଟ
କ୍ତ ଷ୍ଟ ତ୍ତ ଦ୍ଭ

**ସଂଖ୍ୟା ୧୦ଟା .........**

୦ ୧ ୨ ୩ ୪ ୫ ୬
୭ ୮ ୯

**୨ ଚିହ୍ନିତ ସ୍ଥାନରେ ରହେ**

େ◌ ଏ-କାର (କେ)
ଂ◌ ଅନୁସ୍ୱାର (ଂକ) ଶଂକର

**୩ ଚିହ୍ନିତ ସ୍ଥାନରେ ରହେ**

◌ା ଆ-କାର (କା)
◌ୀ ଈ-କାର (କୀ)
◌ଂ ଅନୁସ୍ୱାର (କଂ) କଂସ
◌ଃ ବିସର୍ଗ (ଦୁଃ)
◌ଁ ଚନ୍ଦ୍ରବିନ୍ଦୁ (ନାଁ)
◌୍ୟ ଯ-ଚିହ୍ନ (କ୍ୟ)
◌ୖ ଭ-ଚିହ୍ନ (ଣ୍ଭ)

**୪ ଚିହ୍ନିତ ସ୍ଥାନରେ ରହେ**

◌ି ଇ-କାର (କି)
◌ର୍ ରେଫ (ର୍କ)
ୈ◌ ଐ-କାରାଂଶ (କୈ)
ୌ◌ ଔ-କାରାଂଶ (କୌ)

**୫ ଚିହ୍ନିତ ସ୍ଥାନରେ ରହେ**

◌ୁ ଉ-କାର (କୁ)
◌ୂ ଊ-କାର (କୂ)
◌ୃ ଋ-କାର (କୃ)
◌୍ ହଳନ୍ତ (କ୍)
◌୍ର ର-ଫଳା (କ୍ର)
◌୍ଳ ଳ-ଫଳା (କ୍ଳ)
◌୍ଲ ଲ-ଫଳା (କ୍ଲ)
◌୍ୱ ୱ-ଫଳା (କ୍ୱ)
◌୍ନ ନ-ଫଳା (ପ୍ନ)
◌୍ମ ମ-ଫଳା (ସ୍ମ)
◌୍ଣ ତାଡ-ଚିହ୍ନ (ଷ୍ଣ)
◌୍ତ ତ୍-ଚିହ୍ନ (କ୍ତ)
◌୍ଟ ଟ-ଚିହ୍ନ (ଷ୍ଟ)
◌୍କ କ-ଚିହ୍ନ (ସ୍କ)
◌୍ଜ ଜ-ଚିହ୍ନ (ଜ୍ଜ)
◌୍ଛ ଛ/ଥ-ଚିହ୍ନ (ଚ୍ଛ, ସ୍ଥ)
◌୍ତ/◌୍ତ୍ର ତ/ତ୍ର-ଚିହ୍ନ (ନ୍ତ/ନ୍ତ୍ର, ସ୍ତ/ସ୍ତ୍ର)
◌୍ଣ ଣ-ଚିହ୍ନ (କ୍ଣ, ଷ୍ଣ)
◌୍ଚ (ଶ୍ଚ)
◌୍ଧ (ଦ୍ଧ)
◌୍ଗ (ଙ୍ଗ)
◌୍ଟ (ଣ୍ଟ)
◌୍ଝ (ଞ୍ଝ)
◌୍କ (ଙ୍କ, ଷ୍କ)
◌୍ଡ (ଣ୍ଡ, ଡ୍ଡ)
◌୍ଭ (ଦ୍ଭ)
◌୍ଖ (ଙ୍ଖ, ଙ୍ଘ)
◌୍ଠ (ଷ୍ଠ)
◌୍ଥ (ସ୍ଥ)
◌୍ପ (ମ୍ପ, ଷ୍ପ)
◌୍ଫ (ଫ୍ଫ, ସ୍ଫ)
◌୍ଟ (ଷ୍ଟ)
◌୍ଦ (ଦ୍ଦ)
◌୍ଢ (ଡ୍ଢ)
◌୍ଗ (ଗ୍ଗ)
◌୍ଲ (ଲ୍ଲ)

**ଅକ୍ଷର ତଳେ ଏକାଧିକ ଚିହ୍ନ ୫ ଓ ୬ ଉଭୟ ସ୍ଥାନ ଅଧିକାର କରନ୍ତି ।**

## ସରଳାର୍ଥ

**ଅ......................**

ଅଗ୍ନି ... ନିଆଁ
ଅଙ୍ଗୁଳି ... ଆଙ୍ଗୁଠି
(ଅଂଗୁଳି ... ଆଂଗୁଠି)
ଅଚିରାତ୍ ... ହଠାତ୍
ଅନ୍ୱେଷଣ ... ଖୋଜିବା
ଅବ୍ଜ(ଅବ୍‌ଜ) ... ପଦ୍ମ
ଅମ୍ବୁ (ଅଂବୁ) ... ପାଣି
ଅର୍ଚ୍ଚନା ... ପୂଜା
ଅର୍ଦ୍ଧ ... ଅଧା
ଅର୍ହ ... ଯୋଗ୍ୟ
ଅଶନି ... ଚଡ଼କ
ଅଶ୍ୱ ... ଘୋଡ଼ା
ଅଶ୍ୱତ୍ଥ ... ପିପଳ
ଅସ୍ଥି ... ହାଡ଼

**ଆ......................**

ଆକାଂକ୍ଷା ... ଇଚ୍ଛା
ଆମ୍ଭ (ଆଂଭ) ... ଆମର
ଆର୍ଦ୍ର ... ଓଦା
ଆରବ୍ଧ ... ଆରଂଭ
ଆଳୟ ... ଘର
ଆହୂତ ... ଡକା
ଆସ୍ପଦ ... ଯୋଗ୍ୟ

**ଈ ......................**

ଈଶ ... ଭଗବାନ୍
ଈଷତ୍ ... ଟିକିଏ

**ଉ......................**

ଉଡ୍ଡୀୟମାନ ... ଉଡ଼ଂତା
ଉତ୍ପଳ ... ପଦ୍ମ, କଇଁ
ଉଦର ... ପେଟ
ଉପବୀତ ... ପଇତା
ଉଷ୍ଟ୍ର ... ଓଟ

**ଊ......................**

ଊନ ... କମ୍
ଊର୍ଦ୍ଧ୍ୱ ... ଉପର, ଅଧିକ

**ଋ......................**

ଋଜୁ ... ସିଧା

**ଐ......................**

ଐଣ ... ମୃଗଜାତ
ଐରାବତ ... ସ୍ୱର୍ଗର ହାତୀ

**ଓ......................**

ଓଷ୍ଠ ... ଓଠ

**ଔ......................**

ଔଦାସ୍ୟ ... ଅଲଗା ଭାବ
ଔରସ ... ମାଆ ପେଟରୁ ଜନ୍ମ ହୋଇଥିବା

**କ......................**

କଚ୍ଛପ ... କଇଁଛ
କଣ୍ଟକ ... କଣ୍ଟା
(କଂଟକ ... କଂଟା)
କଣ୍ଠ (କଂଠ) ... ଗଳା
କମ୍ବୁ ... ଶଙ୍ଖ
(କଂବୁ ... ଶଂଖ)
କର୍କଶ ... କଠିନ, ଟାଣ
କର୍ଣ୍ଣ ... କାନ
କାଞ୍ଚନ(କାଂଚନ) ... ସୁନା
କାନନ ... ବନ
କାଷ୍ଠ ... କାଠ
କୁକ୍କୁଟ ... କୁକୁଡ଼ା
କୁଜ୍ଝଟିକା ... କୁହୁଡ଼ି
କୁଜ୍ଝଟୀ ... କୁହୁଡ଼ି
କୁଣ୍ଠିତ(କୁଂଠିତ) ... ଅରାଜି
କୁବ୍ଜ ... କୁଜ
କୁସୁମ ... ଫୁଲ
କୃତ୍ରିମ ... ନକ୍‌ଲି
କେଶ ... ବାଳ, ଚୁଟି
କୈରବ ... ଠକ, କଇଁ
କୋକିଳ ... କୋଇଲି
କ୍ରୀଡ଼ା ... ଖେଳ
କ୍ଳେଶ ... କଷ୍ଟ, ପୀଡ଼ା

**କ୍ଷ......................**

କ୍ଷିତି ... ପୃଥିବୀ
କ୍ଷିପ୍ର ... ଚଂଚଳ
କ୍ଷୁଣ୍ଣ ... ଦୁଃଖିତ
କ୍ଷୁଦ୍ର ... ସାନ
କ୍ଷୁଧା ... ଭୋକ

**ଖ......................**

ଖଞ୍ଜ (ଖଂଜ) ... ଛୋଟା
ଖଟ୍ୱା ... ଖଟ
ଖଡ୍ଗ ... ଖଣ୍ଡା (ଖଂଡା)

**ଗ**......................

ଗଞ୍ଜନା (ଗଂଜନା) ... ଗାଳି

ଗଣ୍ଡୂଷ (ଗଂଡୂଷ) ... ପାପୁଲିଭରା ପାଣି

ଗର୍ଦ୍ଦଭ ... ଗଧ

ଗହ୍ୱର ... ଖାଲ, ଗାତ

ଗିରି ... ପାହାଡ଼

ଗୁଲ୍ଫ ... ପାଦ ଗଂଠି

ଗୁଳ୍ମ ... ବୁଦା

ଗୂଢ଼ ... ଅଜଣା

ଗୃଧ୍ର ... ଶାଗୁଣା, ଗିଧ

ଗୋଣୀ ... ମାପିବା ପାତ୍ର

**ଘ**......................

ଘର୍ମ ... ଝାଳ

ଘୃତ ... ଘିଅ

**ଚ**......................

ଚକ୍ଷୁ ... ଆଖି

ଚରଣ ... ପାଦ

ଚାରୁ ... ସୁଂଦର

ଚୂଡ଼ା ... ଚୁଳି, ଅଗ

**ଛ**......................

ଛିନ୍ନ ... ଛିଣ୍ଡା (ଛିଂଡା)

**ଜ**......................

ଜନନୀ ... ମାଆ

ଜାଡ୍ୟ ... ଜଡ଼ତା

ଜିହ୍ୱା ... ଜିଭ

ଜିହ୍ମ ... ବଙ୍କା (ବଂକା)

ଜ୍ୟେଷ୍ଠ ... ବଡ଼

**ଜ୍ଞ**......................

ଜ୍ଞାତ ... ଜଣା

ଜ୍ଞାତି ... ସଂପର୍କୀୟ

ଜ୍ଞାନ ... ବୋଧ

ଜ୍ଞାପନ ... ଜଣାଇବା

**ଝ**......................

ଝର୍ଝର ... ପାଣି ଝରିବା ଶବ୍ଦ

**ତ**......................

ତନୁ ... ଦେହ

ତରଣୀ ... ଡଙ୍ଗା (ଡଂଗା)

ତରି ... ନଦୀ ପଠା

ତରୁ ... ଗଛ

ତାମ୍ର ... ତମ୍ବା (ତଂବା)

ତିକ୍ତ ... ପିତାଳିଆ

ତୁମ୍ଭରି (ତୁଂଭରି) ... ତୁମର

ତୁମ୍ଭେ (ତୁଂଭେ) ... ତୁମେ

ତୃଷା ... ଶୋଷ

ତୌଳ ... ତଉଲ

ତ୍ୱକ୍ ... ଚର୍ମ, ଚମ

ତ୍ୱରା ... ବେଗ

ତ୍ରାସ ... ଡର

**ଦ**......................

ଦକ୍ଷିଣ ହସ୍ତ ... ଡାହାଣ ହାତ

ଦିନାବସାନ ... ସଂଧ୍ୟା, ସଂଜବେଳ, ବେଳବୁଡ଼ା

ଦିବସ ... ଦିନ

ଦିବା ... ଦିନ

ଦୀନ ... ଗରିବ

ଦୀର୍ଘ ... ଲଂବା

ଦୁକୂଳ ... ପାଟଲୁଗା

ଦୁଗ୍ଧ ... କ୍ଷୀର, ଗୋରସ

ଦ୍ୱାଦଶ ... ୧୨, ବାର

ଦ୍ୱିଜ ... ବ୍ରାହ୍ମଣ, ପକ୍ଷୀ

**ଧ**......................

ଧରଣୀ ... ପୃଥିବୀ

ଧୀବର ... କେଉଟ

ଧୂମ ... ଧୂଆଁ, କୁହୁଳା

ଧେନୁ ... ଗାଈଗୋରୁ

ଧୌତ ... ଧୁଆ

**ନ**......................

ନକ୍ର ... କୁଂଭୀର, ମଗର

ନବୀନ ... ନୂଆ

ନସ୍ୟ ... ଶୁଂଘିବା ନାସ

ନାବ ... ଡଂଗା

ନାରିକେଳ ... ନଡ଼ିଆ

ନାସା ... ନାକ

ନିଧି ... ଧନ

ନିରଂତର ... ସବୁବେଳେ

ନିଶା ... ରାତି

ନିଷ୍ପ୍ରୟୋଜନ ... ଅଦରକାରୀ

ନିଷ୍ଫେନ ... ଫେନ-ହୀନ

ନୀର ... ପାଣି

ନୃପତି ... ରାଜା

**ପ...........................**

ପଙ୍କ (ପଂକ) ... କାଦୁଅ
ପଙ୍କଜ (ପଂକଜ) ... ପଦ୍ମ
ପଞ୍ଜିକା (ପଂଜିକା) ... ପାଞ୍ଜି (ପାଂଜି)
ପଞ୍ଝାଏ (ପଂଝାଏ) ... ଦଳେ, ଏକ ଦଳ
ପଙ୍‌କ୍ତି (ପଂକ୍ତି) ... ଧାଡ଼ି
ପକ୍ୱ ... ପାଚିଲା
ପନ୍ନଗ ... ସାପ
ପର୍ଣ ... ପତ୍ର
ପଲ୍ଲବ ... କଅଁଳ ପତ୍ର
ପଲ୍ୱଳ ... ଗଡ଼ିଆ
ପାଠଶାଳା ... ବିଦ୍ୟାଳୟ
ପାର୍ଶ୍ୱ ... ପାଖ, କଡ଼
ପାଷାଣ ... ପଥର
ପିତା ... ବାପା
ପିପାସା ... ଶୋଷ
ପୀତ ... ହଳଦିଆ
ପୁଣ ... ପୁଣି, ଫେର୍
ପୁଣ୍ଡ୍ର(ପୁଂଡ୍ର) ... ତିଳକ
ପୁଷ୍ପ ... ଫୁଲ
ପୋଥି ... ବହି
ପ୍ରଗଲ୍‌ଭ ... କୁହାଳିଆ
ପ୍ରଫୁଲ୍ଲ ... ଆନଂଦିତ

**ଫ...........................**

ଫଣୀ ... ସାପ
ଫାଲ୍‌ଗୁନ ... ଫଗୁଣ

**ବ...........................**

ବକ୍ତ୍ର ... ତୁଣ୍ଡ (ତୁଂଡ), ମୁହଁ, ପାଟି
ବଟବୃକ୍ଷ ... ବରଗଛ
ବତ୍ସର ... ବର୍ଷ
ବଲ୍ଲଭ ... ସ୍ୱାମୀ, ବର
ବର୍ମ ... ସାଞ୍ଜୁ (ସାଂଜୁ)
ବର୍ହ ... ପତ୍ର
ବଳିଷ୍ଠ ... ବଳୁଆ
ବସ୍ତ୍ର ... ଲୁଗା, କପଡ଼ା
ବହ୍ନି ... ନିଆଁ
ବାଞ୍ଛା (ବାଂଛା) ... ଇଚ୍ଛା
ବାଣୀ ... କଥା
ବିଂଶତି ... କୋଡ଼ିଏ, ୨୦
ବିଜ୍ଞ ... ଜ୍ଞାନୀ, ସୁଜାଣ
ବିଧି ... ନିୟମ
ବିଧୁ ... ଚନ୍ଦ୍ର(ଚଂଦ୍ର), ଜହ୍ନ
ବିପରୀତ ... ଓଲଟା
ବିଲ୍ୱ ... ବେଲ
ବିଶାଳ ... ବଡ଼
ବିହଙ୍ଗ (ବିହଂଗ) ... ପକ୍ଷୀ, ଚଢ଼େଇ
ବୀଜ ... ମଞ୍ଜି (ମଂଜି), ବିହନ
ବୃକ୍ଷ ... ଗଛ
ବୃଷ ... ଷଣ୍ଢ (ଷଂଢ)
ବେଣୁ ... ବଇଁଶୀ
ବ୍ରୀଡ଼ା ... ଲାଜ
ବ୍ରୀହି ... ବିରି

**ଭ...........................**

ଭଗିନୀ ... ଭଉଣୀ
ଭର୍ତ୍ସନା ... ଗାଳି
ଭୀତ ... ଡରୁଆ
ଭୀରୁ ... ଡରକୁଳା
ଭୁଞ୍ଜି (ଭୁଂଜି) ... ଖାଇ, ଭୋଜନ କରି
ଭୂପ ... ରାଜା
ଭୃତ୍ୟ ... ଚାକର
ଭ୍ରାତା ... ଭାଇ

**ମ...........................**

ମକ୍ଷିକା ... ମାଛି
ମତ୍ସ୍ୟ ... ମାଛ
ମଧୁ ... ମହୁ
ମଳୟ ... ପବନ
ମସ୍ତକ ... ମୁଣ୍ଡ (ମୁଂଡ), ମଥା
ମହୀ ... ପୃଥିବୀ
ମାତା ... ମାଆ
ମିଷ୍ଟ ... ମିଠା
ମୀନ ... ଛୋଟ ମାଛ
ମୁକୁଳ ... କଢ଼ି
ମୁଖ ... ମୁହଁ
ମୁରଲୀ ... ବଇଁଶୀ
ମୂଢ଼ ... ମୂର୍ଖ
ମୂଷିକ ... ମୂଷା
ମୃଣାଳ ... ପଦ୍ମନାଡ଼
ମୃଣ୍ମୟ ... ମାଟିରେ ତିଆରି

ମୃଦୁ ... କଅଁଳ
ମେଷ ... ମେଣ୍ଢା (ମେଂଢା)
ମୋହର ... ମୋର

**ଯ**..........................

ଯାଚ୍ଞା ... ଭିକ୍ଷା, ଯାଚନା
ଯାମିନୀ ... ରାତି
ଯୂଥ ... ଦଳ
ଯୂପ ... ବଳି କାଠ, ହରିକାଠ
ଯୂଷ ... ରସ, ଝୋଳ

**ର**..........................

ରଜକ ... ଧୋବା
ରଜନୀ ... ରାତି
ରନ୍ଧ୍ର (ରଂଧ୍ର) ... କଣା
ରବି ... ସୂର୍ଯ / ସୂର୍ଯ୍ୟ
ରମଣୀ ... ନାରୀ
ରାଜ୍ଞୀ ... ରାଣୀ
ରସନା ... ଜିଭ
ରେଣୁ ... ଧୂଳି
ରୋଦନ ... କାଂଦିବା
ରୋଷ ... କୋପ, ରାଗ
ରୌଦ୍ର ... ଖରା

**ଲ**..........................

ଲାଜା ... ଲିଆ
ଲୀଳା ... ଖେଳ
ଲୋଚନ ... ଆଖି
ଲୋହିତ ... ଲାଲ
ଲୌହ ... ଲୁହା

**ଶ**..........................

ଶକଟ ... ଶଗଡ଼
ଶଙ୍କା (ଶଂକା) ... ଡର
ଶକ୍ର ... ଇନ୍ଦ୍ର (ଇଂଦ୍ର) ଦେବ
ଶତ ... ଶହେ
ଶତ ଶତ ... ଶହ ଶହ
ଶରୀର ... ଦେହ
ଶର୍କରା ... ଚିନି
ଶଲ୍କ ... ମାଛ କାତି
ଶଶୀ ... ଚନ୍ଦ୍ର (ଚଂଦ୍ର)
ଶାଖା ... ଡାଳ, ଡାହି
ଶାବକ ... ଛୁଆ
ଶାଲ୍ମଳୀ ... ଶିମୁଳି
ଶୁଚି ... ପବିତ୍ର
ଶୁଷ୍କ ... ଶୁଖିଲା, ଶୁଖା
ଶୂକର ... ଘୁଷୁରି
ଶୂଳ ... ପୀଡ଼ା
ଶୃଗାଳ ... ଶିଆଳ
ଶୈବାଳ ... ଶିଉଳି
ଶୈଳ ... ପର୍ବତ
ଶ୍ୟାମ ... ନୀଳ
ଶ୍ୱେତ ... ଧଳା, ଧୋବ
ଶ୍ମଶ୍ରୁ ... ଦାଢ଼ି
ଶ୍ରବଣ ... ଶୁଣିବା

**ଷ**..........................

ଷୋଡ଼ଶ ... ଷୋହଳ, ୧୬

**ସ**..........................

ସଙ୍କେତ (ସଂକେତ) ... ଠାର
ସତ୍ୱର ... ଜଲ୍ଦି
ସଦୃଶ ... ଭଳି, ପରି
ସଦ୍ମ ... ନିବାସ
ସନ୍ତରଣ (ସଂତରଣ) ... ପହଁରିବା
ସମୀର ... ପବନ
ସମୂଳକ ... କାରଣଯୁକ୍ତ
ସମ୍ପ୍ରତି (ସଂପ୍ରତି) ... ଏବେ
ସମ୍ବତ୍ସର (ସଂବତ୍ସର) ... ବର୍ଷ
ସମ୍ରାଜ୍ଞୀ ... ମହାରାଣୀ
ସର୍ପ ... ସାପ
ସର୍ବ ... ସବୁ
ସର୍ବତ୍ର ... ସବୁଠାରେ
ସାନ୍ଦ୍ର (ସାଂଦ୍ର) ... ଗାଢ଼, ଘନ
ସୁଚାରୁ ... ସୁଂଦର
ସୁଧା ... ଅମୃତ
ସୁଦ୍ଧା ... ପର୍ଯ୍ୟଂତ
ସୁମରି ... ମନେ ରଖି
ସେତୁ ... ପୋଲ
ସୌଧ ... କୋଠାଘର
ସୌରଭ ... ବାସ୍ନା, ମହକ
ସ୍ପର୍ଶ ... ଛୁଆଁ, ଛୁଇଁବା
ସ୍ଫୀତ ... ଫୁଲିଥିବା
ସ୍ୱର୍ଣ୍ଣ ... ସୁନା

**ହ**..........................

ହରିଦ୍ରା ... ହଳଦି
ହସ୍ତ ... ହାତ
ହିମ ... ବରଫ୍
ହେତୁ ... କାରଣ

# ସମାର୍ଥକ ଶବ୍ଦାବଳି

## (ଶବ୍ଦ ଭିନ୍ନ ଭିନ୍ନ, ଅର୍ଥ ପ୍ରାୟ ସମାନ)

ଅକ୍ଷର, ଲିପି, ବର୍ଣ୍ଣ, ଲେଖା
ଅଗ୍ନି, ନିଆଁ, ଅନଳ, ବହ୍ନି
ଅଜ୍ଞ, ମୂର୍ଖ, ମୂଢ଼, ବୋକା
ଅଦ୍ରି, ଗିରି, ପର୍ବତ, ଶୈଳ
ଅନାବଶ୍ୟକ, ନିଷ୍ପ୍ରୟୋଜନ, ଅଦରକାରୀ, ଅଲୋଡ଼ା
ଅନେକ, ଅସଂଖ୍ୟ, ବହୁତ, ଏକାଧିକ
ଅନ୍ୟ, ଭିନ୍ନ, ଅଲଗା, ଅପର
ଅମୃତ, ସୁଧା, ପୀୟୂଷ, ଅମିୟ
ଅରଣ୍ୟ, କାନନ, ବନ, ଜଙ୍ଗଲ
ଅର୍ଚ୍ଚନା, ପୂଜା, ଆରାଧନା, ବନ୍ଦନା
ଅଳ୍ପ, କମ୍, ସାମାନ୍ୟ, ଈଷତ୍
ଆଇନ୍, ବିଧି, ବିଧାନ, ନିୟମ
ଆକାଶ, ଗଗନ, ଅମ୍ବର, ବ୍ୟୋମ, ନଭ
ଆଖି, ନେତ୍ର, ଚକ୍ଷୁ, ନୟନ, ଲୋଚନ
ଆନନ୍ଦ, ପ୍ରସନ୍ନତା, ହର୍ଷ, ଖୁସି
ଆଶଙ୍କା, ଭୟ, ଡର, ତ୍ରାସ
ଇଚ୍ଛା, ବାଞ୍ଛା, ଅଭିଳାଷ, ଆକାଂକ୍ଷା
ଇତି, ଅନ୍ତ, ଶେଷ, ସମାପ୍ତ, ଅବସାନ
ଈଶ୍ୱର, ଭଗବାନ୍, ବିଭୁ, ପ୍ରଭୁ
ଉନ୍ନତି, ବିକାଶ, ପ୍ରଗତି, ବୃଦ୍ଧି
ଊର୍ଦ୍ଧ୍ୱ, ଅଧିକ, ଉପର, ଉଚ୍ଚ
ଋଜୁ, ସିଧା, ସରଳ
ଋଣ, ଧାର, ଉଧାର, କରଜ

ଓଠ, ଅଧର, ଓଷ୍ଠ
ଓଦା, ଭିଜା, ଆର୍ଦ୍ର, ସିକ୍ତ
କଣା, ଫୋଡ଼, ଛିଦ୍ର, ରନ୍ଧ୍ର
କଥା, ବଚନ, ବାଣୀ, କଥନ
କନ୍ୟା, ଝିଅ, ତନୟା, ଦୁହିତା
କପଡ଼ା, ବସ୍ତ୍ର, ବସନ, ଲୁଗା
କଷ୍ଟ, ପୀଡ଼ା, ବ୍ୟଥା, ଯାତନା
କାଠ, କାଷ୍ଠ, ଦାରୁ
କାନ, କର୍ଣ୍ଣ, ଶ୍ରୁତି
କାମ, କାର୍ଯ୍ୟ, ପାଇଟି, ବୁତା
କାୟା, ଦେହ, ଶରୀର, ତନୁ
କୁସୁମ, ଫୁଲ, ପୁଷ୍ପ, ପ୍ରସୂନ
କୁହୁଳା, ଧୂଆଁ, ଧୂମ, କୁହେଳି
କୃପା, ଦୟା, ଅନୁଗ୍ରହ, କରୁଣା
କ୍ରୀଡ଼ା, ଖେଳ, ଖେଳା, ଲୀଳା, କେଳି
କ୍ରୋଧ, ରାଗ, ରୋଷ, କୋପ
କ୍ଲେଶ, ପୀଡ଼ା, ବ୍ୟଥା, ଯନ୍ତ୍ରଣା
କ୍ଲାନ୍ତ, ହାଲିଆ, ଅଥା, ଅବଶ
କ୍ଷୀର, ଦୁଗ୍ଧ, ଗୋରସ, ନିତ୍ୟାନି
ଗାଳି, ଭର୍ତ୍ସନା, ନିନ୍ଦା, ତିରସ୍କାର
ଗାଈ, ଗୋ, ଗାଭୀ, ଧେନୁ
ଗରିବ, ଦରିଦ୍ର, ନିର୍ଦ୍ଧନ, ଅଭାବୀ
ଗୁଣ୍ଡ, ଚୂନା, ଚୂରା, ଚୂର୍ଣ୍ଣ, ରେଣୁ

ଗୃହ, ଘର, ନିବାସ, ସଦ୍ମ

ଘାସ, ତୃଣ, ଦୂବ, କୁଶ, ନଡ଼ା

ଚଡ଼କ, ବଜ୍ର, ଅଶନି, କୁଳିଶ

ଚାକର, ଭୃତ୍ୟ, ଦାସ, କିଂକର

ଚମ, ଚର୍ମ, ତ୍ୱକ୍, ତ୍ୱଚା, ଛାଲ

ଚଂଦ୍ର, ଚାଂଦ, ଜହ୍ନ, ଇଂଦୁ, ବିଧୁ

ଜିଭ, ଜିହ୍ୱା, ରସନା

ଚେଷ୍ଟା, ଉଦ୍‌ଯୋଗ, ପ୍ରୟାସ, ଉଦ୍ୟମ

ଛୁଆ, ପିଲା, ଶାବକ, ଶିଶୁ

ଚୂଡ଼ା, ଚୂଳ, ଶିଖର, ଶୀର୍ଷ

ଜ୍ଞାନୀ, ବିଜ୍ଞ, ଅଭିଜ୍ଞ, ବିଦ୍ୱାନ୍

ଡର, ଭୟ, ଭୀତି, ଶଂକା, ଛନକା

ଡରୁଆ, ଡରକୁଳା, ଭୀରୁ, ଭୟାଳୁ

ଡାଳ, ଡାହି, ଶାଖା, କେନା

ଦଳ, ପଲ, ଗୋଠ, ଯୂଥ, ମେଂଟ

ଦିନ, ଦିବା, ଦିବସ, ବାସର

ଦେହ, ଶରୀର, ତନୁ, କଳେବର

ଦ୍ୱୀପ, ଟାପୁ, ଚଡ଼ା, ପଠା

ଧନ, ସଂବଳ, ନିଧି, ବିତ୍ତ

ଧୀର, ମଂଥର, ମୃଦୁ, ଅଳସ

ନାକ, ନାସା, ନାସିକା

ନିଆଁ, ଅଗ୍ନି, ଅନଳ, ପାବକ, ବହ୍ନି

ପକ୍ଷୀ, ଚଢ଼େଇ, ବିହଂଗ

ପଦ୍ମ, ପଂକଜ, କମଳ, ରାଜୀବ, ଉତ୍ପଳ, ଅବ୍ଜ

ପବନ, ବାୟୁ, ଅନିଳ, ସମୀର, ମଳୟ

ପର୍ବତ, ପାହାଡ଼, ଗିରି, ଶୈଳ

ପାଖ, ପାଶ, ପାର୍ଶ୍ୱ, ଆଡ଼, କଡ଼, କତି

ପାଣି, ଜଳ, ନୀର, ଉଦକ

ପୃଥିବୀ, ମହୀ, ଧରଣୀ, ଧରା, କ୍ଷିତି

ଫୁଲ, ପୁଷ୍ପ, କୁସୁମ, ପ୍ରସୂନ, ସୁମନ

ବଇଁଶୀ, ବଂଶୀ, ବେଣୁ

ବଗିଚା, ଉଦ୍ୟାନ, ତୋଟା, ବୁରେଇ

ବଡ଼, ବିଶାଳ, ବୃହତ୍, ବିରାଟ୍

ବରଫ୍, ହିମ, ତୁଷାର, ନୀହାର, ତୁହିନ

ବହି, ପୁସ୍ତକ, ପୋଥି, ଗ୍ରଂଥ

ବାସ୍ନା, ବାସ, ମହକ, ଗଂଧ, ସୌରଭ

ବେଶି, ଅତି, ଢେର୍, ଭାରି, ଅଧିକ

ମଂଜି, ବୀଜ, ବିହନ

ମାଆ, ମାତା, ଜନନୀ, ବୋଉ

ମାଛ, ମତ୍ସ୍ୟ, ମୀନ, ଝଷ, ଝୁରି

ମିଠା, ମିଷ୍ଟ, ମଧୁର, ମିଠାଳିଆ, ମିଷ୍ଟାନ୍ନ

ମୁଂଡ, ମଥା, ମସ୍ତକ, ଶିର

ମୁହଁ, ମୁଖ, ଆନନ, ବଦନ, ଚେହେରା

ମୂଲ୍ୟ, ଦାମ୍, ଭାଉ, ଦର, ମୂଲ

ରକ୍ତ, ଲହୁ, ରୁଧିର, ଶୋଣିତ

ରାଜା, ନୃପତି, ଭୂପ

ରାତି, ରାତ୍ରି, ନିଶା, ରଜନୀ, ଯାମିନୀ

ଲାଜ, ଲଜ୍ଜା, ସଂକୋଚ, ବ୍ରୀଡ଼ା

ଲୁଗା, କନା, କପଡ଼ା, ବସ୍ତ୍ର, ବସନ

ଶୁଖା, ଶୁଖିଲା, ଶୁଷ୍କ

ସାପ, ସର୍ପ, ଅହି, ପନ୍ନଗ

ସୁନା, ସ୍ୱର୍ଣ୍ଣ, ସୁବର୍ଣ୍ଣ, କାଂଚନ

# ବିପରୀତ ଅର୍ଥକ

| | | |
|---|---|---|
| ଅଗ୍ନି : ଜଳ | ବୃହତ୍ : କ୍ଷୁଦ୍ର | ସରଳ : ଜଟିଳ |
| ଅର୍ଦ୍ଧ : ପୂର୍ଣ୍ଣ | ବଳିଷ୍ଠ : ଦୁର୍ବଳ | କମ୍ : ବେଶି |
| ଈଷତ୍ : ପ୍ରଚୁର | ବିଶାଳ : କ୍ଷୁଦ୍ର | ମୋଟା : ପତଳା |
| ଉଚ୍ଚ : ନୀଚ | ଭୀତ : ନିର୍ଭୀକ | ଡରୁଆ : ନିଡର |
| ଉପର : ତଳ | ଭୀରୁ : ସାହସୀ | ଲୋଭୀ : ନିର୍ଲୋଭ |
| ଋଜୁ : କୁଟିଳ | ମୃଦୁ : ରୁକ୍ଷ | ଉତ୍କୃଷ୍ଟ : ନିକୃଷ୍ଟ |
| କର୍କଶ : କୋମଳ | ଶ୍ୱେତ : କୃଷ୍ଣ | ଉତ୍ଥାନ : ପତନ |
| କୃତ୍ରିମ : ପ୍ରାକୃତିକ | ଓଦା : ଶୁଖିଲା | ଧନବାନ୍ : ନିର୍ଧନ |
| ଖରା : ଛାଇ | ସତ : ମିଛ | ଆଗ : ପଛ |
| ତିକ୍ତ : ମିଷ୍ଟ | ଭୁଲ୍ : ଠିକ୍ | ହାନି : ଲାଭ |
| ଦିନ : ରାତି | ନରମ : କଠିନ | ସତ୍ୟ : ମିଥ୍ୟା |
| ଦିବା : ରାତ୍ରୁ | ବଳୁଆ : ଦୁର୍ବଳ | ଧନୀ : ଗରିବ |
| ଦିବସ : ରଜନୀ | ଜ୍ଞାନୀ : ଅଜ୍ଞାନ | ସଫା : ମଇଳା |
| ଦୀର୍ଘ : ହ୍ରସ୍ୱ | ସ୍ୱାର୍ଥପର : ନିଃସ୍ୱାର୍ଥ | ବଡ଼ : ସାନ |
| ଧଳା : କଳା | ଦୃଢ଼ : ଶିଥିଳ | ଭଲ : ମନ୍ଦ |
| ନବୀନ : ପ୍ରାଚୀନ | ଭଂଗା : ଗଢ଼ା | ଆବଶ୍ୟକ : ଅନାବଶ୍ୟକ |
| ପ୍ରଗଲ୍ଭ : ମୌନ | ଉଠାଣି : ଗଡ଼ାଣି | କର୍ମଠ : ଅଳସୁଆ |



**ଭକ୍ତକବି ମଧୁସୂଦନ ରାଓ**
**(୧୮୫୩-୧୯୧୨)**

ଭକ୍ତକବିଙ୍କର ଓଡ଼ିଆ ଭାଷା ଓ ସାହିତ୍ୟକୁ ନାନା ମହାନ୍ ଅବଦାନ ମଧ୍ୟରେ ଗୋଟିଏ ହେଉଛି **'ବର୍ଣବୋଧ'**। ଓଡ଼ିଆ ଲିପି ବା ବର୍ଣମାଳା ସହିତ ପ୍ରଥମ ପରିଚୟ ପ୍ରଦାନକାରୀ ପୁସ୍ତକ ଭାବରେ ଏହାର ଉପାଦେୟତା ଅସାଧାରଣ। ଶତାଧିକ ବର୍ଷ ଧରି ଓଡ଼ିଆ ଶିଶୁମାନେ ଏହି ପୁସ୍ତକ ପଢ଼ି ନିଜର ପ୍ରାଥମିକ ବର୍ଣ ପରିଚୟକୁ ସୁଦୃଢ଼ କରିଆସିଛନ୍ତି।

ଭାଷାରେ ପରିବର୍ତ୍ତନ ଓ ବିବର୍ତ୍ତନ ସବୁବେଳେ ଘଟି ଚାଲିଥାଏ। ତାହାକୁ ଭଲଭାବେ ବିଚାର କରି ଗ୍ରହଣୀୟ ପରିବର୍ତ୍ତନଗୁଡ଼ିକୁ ଭାଷାର ସମସ୍ତ ବ୍ୟବହାରକାରୀ ସ୍ୱୀକାର କରିପାରିଲେ ଭାଷା ଯୁଗୋପଯୋଗୀ ହୁଏ।

୨୦୧୪ ମସିହାରେ ଓଡ଼ିଆ ଭାଷା ମର୍ଯ୍ୟାଦାଜନକ 'ଶାସ୍ତ୍ରୀୟ' ମାନ୍ୟତା ପାଇଛି। ଏହି ମାନ୍ୟତା ପାଇବାରେ ଓଡ଼ିଆ ହେଉଛି ଦେଶର ଷଷ୍ଠ ଭାଷା। ଏଭଳି ଏକ ଗୌରବପୂର୍ଣ ଐତିହାସିକ ଅବସରରେ ଆମ ଭାଷାର ଉତ୍ତରୋତ୍ତର ବିକାଶ, ପ୍ରଚାର ଓ ପ୍ରସାର ପାଇଁ ସବୁ ଓଡ଼ିଆଙ୍କର ନିରବଚ୍ଛିନ୍ନ ଆନ୍ତରିକ ଉଦ୍ୟମ ଲୋଡ଼ା।

ଆଜିକୁ ୧୧୯ ବର୍ଷ ପୂର୍ବେ ପ୍ରକାଶିତ ଭକ୍ତକବିଙ୍କ 'ବର୍ଣବୋଧ'ର ଏକ ନୂତନ ସଂପାଦିତ ସଂସ୍କରଣ ପ୍ରକାଶ କରିବାକୁ ଗଲାବେଳେ ଚଳିତ ସମୟର ଆବଶ୍ୟକତା ତଥା ଆଗାମୀ ସମୟର ସଂଭାବନାକୁ ଗଭୀର ଭାବେ ବିଚାର ଓ ଅନୁଶୀଳନ କରି କେତେକ ଆବଶ୍ୟକ ପଦକ୍ଷେପ ଏଥିରେ ଗ୍ରହଣ କରାଯାଇଛି। ଆଶା, ଏହା ସର୍ବଜନାଦୃତ ହେବ।

ଓଡ଼ିଆ ଭାଷା ପ୍ରତିଷ୍ଠାନ